# ଭାଗବତ କଥା

( ଚତୁଶ୍ଚତ୍ୱାରିଂଶତ୍ ଖଣ୍ଡ )

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସଂପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ପଣ୍ଡିତ ନୀଳମଣି ମିଶ୍ର

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

( ଚତୁଶ୍ଚତ୍ୱାରିଂଶତ୍ ଖଣ୍ଡ )

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨
ପ୍ରକାଶନ ଉପଦେଷ୍ଟା :
ଡକ୍ଟର କୃଷ୍ଣପ୍ରସାଦ ମିଶ୍ର
ପ୍ରଥମ ସଂସ୍କରଣ : ୧୯୯୩
ପ୍ରଚ୍ଛଦ :
ଅସିତ୍ ମୁଖାର୍ଜୀ
ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ-୧
ମୂଲ୍ୟ : ଟ ୨୨-୦୦

# BHAGABATA KATHA

( Fortyfour Part )

**Sri Prabhudatta Brahmachari**

Publisher :
**Srimati Annapurna Mishra**
Cuttack Students' Store
Balubazar, Cuttack-2
Publication Adviser :
**Dr. K. P. Mishra**
First Edition : 1993
Price :
**Rs. : 22/-**

# ସୂଚୀ

**ବିଷୟ** **ପୃଷ୍ଠା**





# ଭୂମିକା

## ମୋର ମାନସିକ ବ୍ୟଥା

"ବିକ୍ରୀଡ଼ିତଂ ବ୍ରଜବଧୂଭିରିଦଂ ଚ ବିଷ୍ଣୋଃ
ଶ୍ରଦ୍ଧାନ୍ୱିତୋଽନୁ ଶୃଣୁୟାଦଥ ବର୍ଣ୍ଣୟେଦ୍ ଯଃ ।
ଭକ୍ତିଂ ପରାଂ ଭଗବତି ପ୍ରତିଲଭ୍ୟ କାମଂ
ହୃଦ୍‌ରୋଗମାଶ୍ୱପହିନୋତ୍ୟଚିରେଣ ଧୀରଃ ॥

(ଶ୍ରୀଭା ୧୦ସ୍କ. ୩୩ଅ. ୪୦ଶ୍ଳୋ)

### ଛପ୍ପୟ

କରୁଁ ନିୟମତେଁ ପାଠ ରାସକୀ ପଞ୍ଚାଧ୍ୟାୟୀ ।
କିନ୍ତୁ କୃଷ୍ଣକରୁଣେଶ କାମ ରୁଜ ନହିଁ ମିଟାୟୀ ॥
ଶ୍ରଦ୍ଧା ହିୟମହଁ ନହୀଁ ଅଶ୍ରଦ୍ଧା ତୈଂ ହୀ ବାଚୂଁ ।
ପତିତ ଉଦ୍ଧାରନ ନାମ ପାପ କରି କରିକେ ଜାଚୂଁ ॥
ନିତ୍ୟ ମାନସିକ ବେଦନା, ଶୂଲ ସରିସ ହିୟମେଂ ଚୁଭୈ ।
କରିକୈ ହୂଂ ୟହି ଅଧମ ମନ, ନିରଖି ନିରଖି ବିଷୟନି ଲୁଭୈ ॥

ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହୁଛନ୍ତି, ହେ ରାଜନ୍—"ବ୍ରଜବଧୂମାନଙ୍କ ସହିତ ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ମଧୁର ରାସଲୀଳା କରିଥିଲେ; ସେହି ଆଖ୍ୟାୟିକାକୁ ଯେଉଁ ବ୍ୟକ୍ତି ଶ୍ରଦ୍ଧାର ସହିତ ବାରମ୍ବାର ପାଠ କରେ ଅଥବା ଶ୍ରବଣ କରେ, ସେ ଅତି ଶୀଘ୍ର ଭଗବାନ୍‌ଙ୍କ ପରାଭକ୍ତି ପ୍ରାପ୍ତ ହୋଇ ହୃଦୟରୁ କାମ ବିକାର ଜନିତ ବ୍ୟାଧିକୁ ଦୂର କରିବାରେ ସକ୍ଷମ ହୁଏ ।"

ପୁସ୍ତକରେ ଭଗବଦ୍ ବିଷୟଙ୍କ ତତ୍ତ୍ୱ ସମ୍ପର୍କରେ ଲେଖୁଛି, ଏବଂ ଶାସ୍ତ୍ର ବିଷୟରେ ଆଲୋଚନା କରୁଛି; ମାତ୍ର ଭୂମିକାରେ ମୁଁ ମୋର ଅନୁଭୂତିଗୁଡ଼ିକ ଲେଖି ଦେଉଛି । ଏହି ଭୂମିକାରେ ମୋ ଅନୁଭୂତି ସମ୍ପର୍କରେ ଲେଖିବାର ଗୋଟିଏ ପ୍ରଧାନ କାରଣ ରହିଛି । ତା' ହେଉଛି—ମୋ ମାର୍ଗରେ ଯେଉଁମାନେ ଯାଉଛନ୍ତି ସେମାନେ ମୋ' ଅନୁଭୂତିଗୁଡ଼ିକ

ଜାଣି ସାବଧାନ ହୋଇଯିବେ ଏବଂ ମୋ ଭୁଲ୍ କରିବେ ନାହିଁ । ନିଜ ଅନୁଭୂତି ଲେଖୁ ଲେଖୁ, ସେଥିରେ ଆତ୍ମ ପ୍ରଶଂସା ମଧ୍ୟ ଲେଖି ଦେଉଛି । ଯେତେ ଚତୁରତାର ସହିତ ଆତ୍ମପ୍ରଶଂସାର ଅବତାରଣା କରାଗଲେ ମଧ୍ୟ ବିଜ୍ଞପାଠକମାନେ ତାହା ବେଶ୍ ଜାଣି ପାରନ୍ତି । ତେଣୁ ମୋର ଅନୁରୋଧ ହଂସ ଯେପରି ନୀର ମଧ୍ୟରୁ କେବଳ କ୍ଷୀରତତ୍ତ୍ୱ ଗ୍ରହଣ କରିଥାଏ, ପାଠକମାନେ ସେହିପରି ମୋ' ଆତ୍ମପ୍ରଶଂସାତକ ଗୁଡ଼ିକ ଛାଡ଼ି ଦେଇ କେବଳ ଅନୁଭୂତିଗୁଡ଼ିକ ଗ୍ରହଣ କରନ୍ତୁ । ରାସ ପଞ୍ଚାଧ୍ୟାୟୀ ମଧ୍ୟରେ ଶ୍ରୀ ଶୁକଦେବ ସମସ୍ତ ରହସ୍ୟ ଲୀଳାକୁ ବିସ୍ତୃତ ଭାବରେ ବର୍ଣ୍ଣନ କରିଛନ୍ତି । ତେଣୁ ମୁଁ ଏହି ଭୂମିକାରେ ମୋ' ଜୀବନର ରହସ୍ୟମୟ ଘଟଣାର ଅବତାରଣା କରିବାକୁ ଯାଉଛି । ଏହି ରାସ ପଞ୍ଚାଧ୍ୟାୟୀର ପାଠ ଫଳରେ ମୁଁ କିପରି ହୃଦ୍‌ରୋଗରୁ ମୁକ୍ତ ହୋଇଥିଲି, ତାହାହିଁ ମୁଁ ଲେଖିବାକୁ ଯାଉଛି ।

ସଂସାରରେ ଲୌକିକ ତଥା ଅଲୌକିକ ନାମରେ ଦୁଇପ୍ରକାର ବସ୍ତୁ ରହିଛି । ଲୌକିକ ବସ୍ତୁ ମଧ୍ୟରେ ଧନ, ସମ୍ପତ୍ତି, ଘର, ବାଗବଗିଚା, ସ୍ତ୍ରୀ, ପୁତ୍ର, ଯଶ, ମାନ, ଗୌରବ, ଅନ୍ତର୍ଭୁକ୍ତ ହୋଇଥାଏ । ଏହି ବସ୍ତୁଗୁଡ଼ିକ ଯଦି ସତ୍ ଉପାୟରେ ତଥା ଧର୍ମମାର୍ଗରେ ଉପାର୍ଜନ କରାଯାଏ, ତେବେ ଏହାର ମାଧ୍ୟମରେ ଇହଲୋକରେ ସୁଖ ଲାଭ କରିବା ସଙ୍ଗେ ସଙ୍ଗେ ପରଲୋକରେ ମଧ୍ୟ ସୁଗତି ପ୍ରାପ୍ତ ହୋଇଥାଏ; କିନ୍ତୁ ଏହା ଅଧର୍ମ ତଥା ଅନ୍ୟାୟ ଭାବରେ ଅର୍ଜନ କରାଗଲେ, ଇହଲୋକରେ କେବେହେଲେ ଶାନ୍ତି ମିଳେ ନାହିଁ କିମ୍ବା ପରଲୋକରେ ମୁକ୍ତି ମିଳେ ନାହିଁ । ମୃତ୍ୟୁ ପରେ ଭଗବଦ୍ଗତି ଲାଭ କରିବା ହେଉଛି—ପାରଲୌକିକ ସୁଖ । ମନୁଷ୍ୟର ଇନ୍ଦ୍ରିୟଗୁଡ଼ିକ ନାନାପ୍ରକାର ଇଚ୍ଛା କରୁଥାଏ । ଇନ୍ଦ୍ରିୟ ରୂପକ ବଳବାନ୍ ଘୋଡ଼ାମାନଙ୍କୁ ବିବେକ ରୂପକ ଚାବୁକ ମାରି ସୁମାର୍ଗରେ ଚଳାଇବା ହେଉଛି, ମନର କର୍ତ୍ତବ୍ୟ । ଯେପର୍ଯ୍ୟନ୍ତ ଇନ୍ଦ୍ରିୟମାନେ ନିଜ ଇଚ୍ଛାରେ ଚାଲୁଥିବେ, ସେ ପର୍ଯ୍ୟନ୍ତ ଶାଶ୍ୱତପଥ ମିଳେ ନାହିଁ । ବିଷୟ ରସରୁ ବିରକ୍ତ ହୋଇ ପ୍ରଭୁ ପ୍ରେମରେ ମନକୁ ଲଗାଇ ପାରିଲେ, ଏ ସଂସାରଟି ମନୁଷ୍ୟ ପକ୍ଷରେ ସୁଖମୟ ହୋଇ ଉଠିବ ଏବଂ ଜୀବନ ମଧ୍ୟ ସାର୍ଥକ ହେବ ।

ମନ ହେଉଛି—ଏକ ଅଗାଧ ସମୁଦ୍ର । ସେଥିରେ ଭଲ ମନ୍ଦ ରୂପକ ଅନେକ ଲହରୀ ଉଠିଥାଏ । କେତେବେଳେ ଜ୍ଞାନ ବୈରାଗ୍ୟ ଜପ; ତପ, ନିୟମ ତଥା ପ୍ରତିଷ୍ଠାର ଭାବନାମାନ ମନ ମଧ୍ୟରେ ଉଦ୍‌ବେଳିତ ହୋଇଥିବାବେଳେ, ଆଉ କେତେବେଳେ କାମବାସନାର ପରିତୃପ୍ତି ନିମିତ୍ତ ଅନେକ ପ୍ରକାର ଦୁଶ୍ଚିନ୍ତା ଉଙ୍କି ମାରୁଥାଏ । ଆଉ କେବେ କେବେ କ୍ରୋଧର ଉତ୍ତାଳ ତରଙ୍ଗ ମଧ୍ୟରେ ଉଠି, ଭୟଙ୍କର କାର୍ଯ୍ୟରେ ମନୁଷ୍ୟକୁ ପ୍ରେରିତ କରାଇଥାଏ । ସେତେବେଳେ ମନୁଷ୍ୟ କର୍ତ୍ତବ୍ୟାକର୍ତ୍ତବ୍ୟ ଭୁଲିଯାଇ, ଆତ୍ମୀୟ ସ୍ୱଜନ, ମିତ୍ର କୁଟୁମ୍ବଙ୍କର ଅନିଷ୍ଟ କରିବାରେ ଆଦୌ ପଶ୍ଚାତ୍‌ପଦ ହୁଏନାହିଁ । ଏପରିକି, ଅତି ଆପଣାର ଲୋକମାନଙ୍କୁ ଖାଇବା ପିନ୍ଧିବାକୁ ନ ଦେଇ ଆତ୍ମତୃପ୍ତି

ଅନୁଭବ କରେ ଏବଂ କ୍ରୋଧବଶତଃ ନିଜେ ମଧ୍ୟ ନ ଖାଇ ନ ପିଇ ଆତ୍ମାକୁ କଷ୍ଟ ଦେଇଥାଏ । ଫଳରେ ଦ୍ୱେଷ, ଘୃଣା ସମ୍ଭରଣ ତଥା ପରଶ୍ରୀକାତରତା ଆଦି ସମସ୍ତ ଦୁର୍ଗୁଣ ମନକୁ ଘେରିଯାଏ ଏବଂ ମନୁଷ୍ୟ ମନୁଷ୍ୟତା ହରାଇ କ୍ରୋଧରେ ଅନ୍ଧ ହୋଇଯାଏ ।

ଅଳ୍ପ କ୍ଷଣସ୍ଥାୟୀ ହେଲେ ମଧ୍ୟ ପ୍ରତ୍ୟେକଙ୍କ ମନରେ ବୈରାଗ୍ୟ ଆସେ । ନିଜର ପ୍ରିୟବସ୍ତୁ ନଷ୍ଟ ହୋଇଗଲେ, ଅବଶ୍ୟ କିଛିକ୍ଷଣ ଲାଗି ମନରେ ବୈରାଗ୍ୟଜାତ ହୁଏ; କିନ୍ତୁ ସେ ବୈରାଗ୍ୟ ଆଦୌ ସ୍ଥାୟୀ ହୁଏନାହିଁ । ସଙ୍ଗେ ସଙ୍ଗେ ସାଂସାରିକ ମୋହମାୟା ମନକୁ ଆବୋରି ବସେ । କାରଣ ଈଶ୍ୱରଙ୍କ ମାୟା ଅପାର । ତାହା ମନୁଷ୍ୟଠୁ ବ୍ରହ୍ମଲୋକଯାଏଁ ବ୍ୟାପ୍ତ । ତା'ର କବଳରେ ପଡ଼ି ଯୋଗାରୂଢ଼ ପୁରୁଷମାନେ ଯୋଗଭ୍ରଷ୍ଟ ହୋଇଯାଆନ୍ତି । ତେଣୁ ଏ କ୍ଷେତ୍ରରେ ସାଧାରଣ ମନୁଷ୍ୟମାନେ କପରି ନିଜକୁ ଆୟତ୍ତ ରଖି ପାରିବେ ? ସର୍ବଦା ସାବଧାନ ହେବା ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ । ସାବଧାନତା ଫଳରେ ମନୁଷ୍ୟ ଅସାଧ୍ୟ ସାଧନ କରିଥାଏ ଏବଂ ଅସାବଧାନ ହେଲେ ଅଧଃ-ପତିତ ହୋଇଥାଏ ।

ପୂର୍ବଜନ୍ମର ସଂସ୍କାର ଫଳରେ ମୋ' ମନରେ ବାଲ୍ୟକାଳରୁ ପରମାର୍ଥ ଭାବନା ଜାଗ୍ରତ ହୋଇଥିଲା । ପ୍ରାୟ ପାଞ୍ଚ ସାତ ବର୍ଷ ବୟସରୁ ହିଁ ମୋ' ମନରେ ଭଜନ ପୂଜନ ପାଇଁ ଇଚ୍ଛା ଜାତ ହୋଇଥିଲା । ସେତେବେଳେ ମୋ' ମନରେ ମହାପୁରୁଷ ହେବାର ଧାରଣା ଜାତ ହୋଇଥିଲା ଏବଂ ଅଖଣ୍ଡ ବ୍ରହ୍ମଚର୍ଯ୍ୟବ୍ରତ ଧାରଣ କରିବାର ଭାବନା ମନରେ ଉଠି ନଥିଲା । ତେଣୁ ପିଲାଟି ଦିନରୁ ମୋ' ନାମ ପ୍ରାରମ୍ଭରେ 'ବ୍ରହ୍ମଚାରୀ' ପଦ ଲାଗି ଯାଇଥିଲା । କିନ୍ତୁ ପ୍ରକୃତରେ ନାମ ଅନୁସାରେ ମୋ' ଠାରେ ଗୁଣର ବିକାଶ ହୋଇ ନଥିଲା ।

ଏକଦା କାଶୀରେ ପଢ଼ୁଥିବା ବେଳେ ମୋ' ମନରେ ଆଧ୍ୟାତ୍ମିକ ଧାରଣା ପ୍ରବଳ ବେଗରେ ଉଦ୍‌ବେଳିତ ହେଲା ଏବଂ ମୁଁ ମନେ ମନେ ପାଞ୍ଚଟି ପ୍ରତିଜ୍ଞା କରିଥିଲି ।

୧ । କାହାରିଠାରୁ କୌଣସି ଦ୍ରବ୍ୟ ଗ୍ରହଣ କରିବି ନାହିଁ ।

୨ । ନିଜ ନାମରେ କୌଣସି କୁଟୀର କମ୍ବା ମଠ ପ୍ରତିଷ୍ଠା କରିବି ନାହିଁ ।

୩ । କୌଣସି ସଭାସମିତିର ସଦସ୍ୟ ହେବିନାହିଁ କମ୍ବା କୌଣସି 'ଟ୍ରଷ୍ଟ'ର ପଦାଧିକାରୀ ହେବିନାହିଁ ।

୪ । କାହାରିକୁ ଶିଷ୍ୟ ପଦରେ ଦୀକ୍ଷା ଦେବି ନାହିଁ ।

୫ । ଯଦି ଦୈବାତ୍ କେବେ ନାରୀକୁ କାମନାବଶତଃ ସ୍ପର୍ଶ କରେ, ତେବେ ଏ' ଶରୀରକୁ ଧ୍ୱଂସ କରିଦେବି ।

ଏହି ପାଞ୍ଚୋଟି ବିଷୟକୁ ଆଦର୍ଶରୂପେ ଗ୍ରହଣ କରି, ମୁଁ ଜୀବନଯାତ୍ରା ଆରମ୍ଭ କରିଥିଲି; କିନ୍ତୁ ପୂର୍ଣ୍ଣମାତ୍ରାରେ ଏହି ପ୍ରତିଜ୍ଞାଗୁଡ଼ିକ ପାଳନ କରିବାରେ ମୁଁ ସମର୍ଥ ହୋଇ ନଥିଲି । ଅବଶ୍ୟ ସେଥିପ୍ରତି ମୋ' ମନରେ ପୂର୍ଣ୍ଣ ଆସ୍ଥା ଅତୁଟ ରହିଥିଲା ।

ଅବଶ୍ୟ ମୋ' ମନରେ 'ଦ୍ରବ୍ୟବାସନା' ଏକାବେଳେକେ ଦୂର ହୋଇଯାଇଥିଲା, ତା' ନୁହେଁ; କିନ୍ତୁ ମୁଁ ଯେଉଁ ଦିନଠୁ ଏପରି ପ୍ରତିଜ୍ଞା କଲି, ସେହିଦିନରୁ ସ୍ୱେଚ୍ଛାପୂର୍ବକ ଦ୍ରବ୍ୟ ସଂଗ୍ରହ ପ୍ରତି ଆଦୌ ଲାଳାୟିତ ହୋଇନାହିଁ । ଅବଶ୍ୟ ଅନେକ ସମୟରେ ଭେଟି ବା ଦକ୍ଷିଣାସ୍ୱରୂପ ମୋ' ପାଖକୁ ଧନ ଆସିଛି, କିନ୍ତୁ ଇଚ୍ଛାପୂର୍ବକ ଧନସଂଗ୍ରହ କରିବାର ଅଭିଳାଷ ମୁଁ କରିନାହିଁ । ସର୍ବଦା ମୋ' ସହିତ ଦ୍ରବ୍ୟ ସଂଗ୍ରହକାରୀ ରହୁଥିଲେ । ସାହୁକାର ଓ ଶେଠମାନଙ୍କ ନିକଟରେ ଯେପରି 'ମୁନିମ୍' (ଅର୍ଥାଧିକାରୀ) ରହୁଥିଲେ, ସେପରି ଧନସଂଗ୍ରହକାରୀ ଲୋକ ମୋ' ନିକଟରେ ଥିଲେ । ସେହିମାନେ ହିଁ ସତ୍କର୍ମ ଉଦ୍ଦେଶ୍ୟରେ ଧନକୁ ସାଇତି ରଖୁଥିଲେ । 'ଭାଗବତ କଥା' ଲେଖିବାର ପ୍ରବଳ ଆକାଙ୍କ୍ଷା ମୋ' ମନରେ ଜାତ ହେବା ଦିନରୁ, ସେଥିପ୍ରତି ମୋର ଆସକ୍ତି ବୃଦ୍ଧି ପାଇଛି ସତ୍ୟ; କିନ୍ତୁ ଦ୍ରବ୍ୟସଂଗ୍ରହ କାର୍ଯ୍ୟରୁ ମୁଁ ସ୍ୱେଚ୍ଛାକୃତ ଭାବରେ ବିରତ ହୋଇଥିଲି ।

ଯେଉଁ ଲୋକ ବୈରାଗ୍ୟମୟ ଜୀବନଯାପନ କରିବାକୁ ଇଚ୍ଛା କରେ, ତା' ପକ୍ଷରେ ଆଶ୍ରମ ନିର୍ମାଣର ଆବଶ୍ୟକତା କେଉଁଠି ? ସେ ଚାହେଁ, ଏହି ନଶ୍ୱର ଦେହର ବନ୍ଧନରୁ ସର୍ବୋତଭାବେ ମୁକ୍ତ ହେବା । ସେ ପୁଣି ଇଟା ପଥରରେ ଗଢ଼ା ଆଶ୍ରମ ବନ୍ଧନରେ ପଡ଼ିବ ବା କିପରି ? ଗୋଟିଏ ଜନଶ୍ରୁତି ରହିଛି—ସ୍ଥଳରେ ଯେତୋଟି ଗଣ୍ଠି, ତାକୁ ତିଆରି କରୁଥିବା ଲୋକର ତା' ଠାରୁ ଅଧିକ ବନ୍ଧନ, ତେଣୁ ମୁଁ ଆଉ ସେ ଆଶ୍ରମ—ନିର୍ମାଣର ଧନ୍ଦାରେ ନ ପଡ଼ି ଅନେକ ବର୍ଷ ଏକାନ୍ତ ସ୍ଥାନରେ ନିବାସ କଲି । ନାନାପ୍ରକାର ବାଧା ଓ ବନ୍ଧନରେ ସମ୍ମୁଖୀନ ହେବା ପରେ, ଆପଣାଛାଏଁ ଆସି ଏହି ସ୍ଥାନ (ବୃନ୍ଦାବନ)ରେ ପହଞ୍ଚିଗଲି । ଏହାକୁ ମୁଁ ନିର୍ମାଣ କରିନାହିଁ, ବରଂ ଗୋଟିଏ ପୂର୍ବ ନିର୍ମିତ ଆଶ୍ରମ ମୋତେ ମିଳିଛି । ଏଠୁ 'ଭାଗବତକଥା'ର ପ୍ରଚାର ଓ ପ୍ରସାର ହେବାକୁ ଲାଗିଲା । ଏ' ଆଶ୍ରମ ମୋ' ନାମରେ ନାହିଁ କିମ୍ବା ସରକାରୀ କାଗଜପତ୍ରରେ ମୋ' ନାମ ଉଲ୍ଲେଖ ହୋଇନାହିଁ, ତଥାପି ଲୋକେ ଏହାକୁ 'ବ୍ରହ୍ମଚାରୀ ଆଶ୍ରମ' ବୋଲି କହୁଛନ୍ତି । 'ଭାଗବତକଥା' ପ୍ରତି ମୋ' ମନରେ ଆସକ୍ତି ଜାଗ୍ରତ ହୋଇଛି; ଏହା ମୁଁ ଅସ୍ୱୀକାର କରି ପାରିବି ନାହିଁ; କିନ୍ତୁ ମୁଁ ଦୃଢ଼ତାର ସହିତ ମନକୁ କହେଁ—ଏଥିରେ ମୋର ସ୍ୱାର୍ଥ ବା କଅଣ ? ସବୁକିଛି ପରମେଶ୍ୱରଙ୍କ ଇଚ୍ଛା ଏବଂ ଏହା ତ ଏକପ୍ରକାର ପରୋପକାର । ଶାସ୍ତ୍ରକାରମାନେ ଏହି ମାୟାକୁ ଭିନ୍ନ ଭିନ୍ନ ରୂପରେ ରୂପାୟିତ କରିଛନ୍ତି । ଏହି ଛଳନାମୟୀ ମାୟା କେତେ-ବେଳେ 'ଦୟା' ରୂପରେ ଆସି ଉପସ୍ଥିତ ହେଉଛି ଏବଂ ଆଉ କେତେବେଳେ କ୍ଷମା, ମମତା, କର୍ତ୍ତବ୍ୟପରାୟଣତା, ପ୍ରେମ, ସ୍ନେହ, ପରୋପକାରିତା ତଥା ସର୍ବୋପରି

ପରମେଶ୍ୱର କ୍ରୀଷ୍ଟଙ୍କ ରୂପରେ ଆସି ଅଭିନୟ କରୁଛୁ । ଯେଉଁ ବ୍ୟକ୍ତି ବୈରାଗ୍ୟମୟ ଜୀବନ କଟାଇବାକୁ ଚାହେଁ, ଆଶ୍ରମ ନିର୍ମାଣ ତା' ନିକଟରେ ଏକ ଦୃଢ଼ବନ୍ଧନ ଏବଂ ପତନର କାରଣ । ଅବଶ୍ୟ କାଗଜରେ ଏ' ପ୍ରକାର ମାୟାର ନାମ ଲେଖାଯାଏ ନାହିଁ ସତ; କିନ୍ତୁ ହୃଦୟର ଅନ୍ତରତମ ପ୍ରଦେଶରେ ଏ, ମାୟା ଆସ୍ଥାନ ଜମେଇ ଦେଇ ଏପରି ଭାବରେ ମନୁଷ୍ୟଙ୍କୁ ଆସକ୍ତ କରି ଦିଏ ଯେ, କେବଳ ଗୋଟିଏ ଜନ୍ମ ନାହିଁ, ଏ ବନ୍ଧନରୁ ମୁକୁଳିବାକୁ କେତୋଟି ଜନ୍ମ ନେବାକୁ ପଡ଼ୁଥାଏ । ମୁଁ ମୋ ସମ୍ବନ୍ଧରେ ପାଠକ-ମାନଙ୍କୁ ବିଭ୍ରାନ୍ତ କରିବାକୁ ଚାହେଁ ନାହିଁ; ବରଂ ମୋର ପ୍ରକୃତ ସ୍ଥିତି ମୁଁ ସମସ୍ତଙ୍କ ଆଗରେ ବଖାଣି ଦେଉଛି । ଅବଶ୍ୟ ମୁଁ ଏତିକି କହିପାରେ ଯେ, ମୁଁ ବିଭ୍ରାନ୍ତ ହୋଇ ନାହିଁ; କିନ୍ତୁ ବିଭ୍ରାନ୍ତିକର ପରିସ୍ଥିତି ରୂପକ ନଦୀର ଅତଡ଼ାରେ ଛିଡ଼ା ହୋଇ ବାହାସ୍ଫୋଟ ମାରୁଛି । ଟିକିଏ ମାତ୍ର ଆଗକୁ ପାଦ ବଢ଼ାଇବାମାତ୍ରେ 'ଗୋବିନ୍ଦାୟ ନମୋ ନମଃ' ହୋଇଯିବ ।

ମୁଁ ମୋର ସ୍ଥିତି ସମ୍ପର୍କରେ ଆଉ ଗୋଟିଏ ଦିଗ ସ୍ପଷ୍ଟ କରିଦିଏ । ତାହା ହେଉଛି—ମୁଁ ସଭା ସମିତିରେ ସଭାପତି, ସମ୍ପାଦକ, କୋଷାଧ୍ୟକ୍ଷ, ଆଦି ପଦପଦବୀକୁ ପ୍ରାରମ୍ଭରୁ ଘୃଣା କରି ଆସିଛି । ପିଲାବେଳେ କେତେବେଳେ କେମିତି ସଭାସମିତିକୁ ହୁଏତ ଯାଇଥିବି କିମ୍ବା ପଦପଦବୀର ଅଧିକାରୀ ହୋଇଥିବି; କିନ୍ତୁ କର୍ମକ୍ଷେତ୍ରରେ ପ୍ରବେଶ କରିବା ଦିନଠୁ, ଏ' ପ୍ରକାର ଜଞ୍ଜାଳରେ ଜାଣିଶୁଣି ଯୋଗ ଦେଇ ନାହିଁ । ମାତ୍ର ଦୁଇଥର ମୁଁ ନିଜ ଇଚ୍ଛାରେ ଦଳର ସଦସ୍ୟତା ପତ୍ରରେ ହସ୍ତାକ୍ଷର କରିଛି । ୧୯୨୧ରେ ଅସହଯୋଗ ଆନ୍ଦୋଳନ ଚାଲିଥିବା ବେଳେ, ଦେଶପ୍ରୀତିରେ ଉଦ୍‌ବୁଦ୍ଧ ହୋଇ କଂଗ୍ରେସ ଦଳର ସ୍ୱେଚ୍ଛାସେବକ ଦଳରେ ନାମ ଲେଖାଇଥିଲି । ସେତେବେଳେ ବିଦେଶୀ ସରକାର ବିରୁଦ୍ଧରେ ମୁଁ ଅନେକ ଭାଷଣ ଦେଇଥିଲି; କିନ୍ତୁ ମୋତେ କେହି ଗିରଫ କରି ନଥିଲେ । ଆଉ ଥରେ ଉତ୍ତରପ୍ରଦେଶ (ତତ୍କାଳୀନ ସଂଯୁକ୍ତ ପ୍ରଦେଶ)ର କଂଗ୍ରେସ ଦଳରେ ସଦସ୍ୟ ହେବା ପାଇଁ ପ୍ରଦେଶ ପତ୍ରରେ ଦସ୍ତଖତ କରିଥିଲି । ଏହା ବ୍ୟତୀତ ମୁଁ ଅନ୍ୟ କୌଣସି ଦଳରେ ଯୋଗ ଦେଇ ନାହିଁ କିମ୍ବା କୌଣସି ଦଳର ସଦସ୍ୟ ପତ୍ରରେ ଦସ୍ତଖତ କରିଥିବା ମୋର ସ୍ମରଣ ହେଉ ନାହିଁ ।

ଥରେ ମୋର ବନ୍ଧୁମାନେ ଅଖିଳ ଭାରତୀୟ ସଙ୍ଗୀତିନ ମଣ୍ଡଳ ଗଠନ କରିବାକୁ ମୋତେ ପରାମର୍ଶ ଦେଉଥିଲେ; ମାତ୍ର ସେପରି ଏକ ଅନୁଷ୍ଠାନ ଗଠନ କରିବାକୁ ମୁଁ ନିଜକୁ ଯୋଗ୍ୟ ମନେ କରି ନଥିଲି । ଏଥିପାଇଁ ମୁଁ ଯେ ଏକାନ୍ତ ଅଯୋଗ୍ୟ ତା' ନୁହେଁ; ମୁଁ ଇଚ୍ଛା କଲେ ହୁଏତ ଏ ଗୁରୁକାର୍ଯ୍ୟ ନେଇ ଆଗି ଯାଇ ପାରିଥାନ୍ତି; କିନ୍ତୁ ସେଥିପ୍ରତି ମୋର ସ୍ୱାଭାବିକ ରୁଚି ନଥିଲା । ଅବଶ୍ୟ ଆଜିକାଲି ଅଖିଳ ଭାରତୀୟ ଅନୁଷ୍ଠାନ ଅନେକ ଅଛି । ଯେଉଁ ବ୍ୟକ୍ତି ଦଶ ପାଞ୍ଚଜଣଙ୍କୁ ଏକାଠି କରି ପାରୁଛନ୍ତି, ସେ ଗୋଟିଏ ଅଖିଳ

ଭାରତୀୟ ସଂସ୍ଥାର ସର୍ବେସର୍ବା ହୋଇ ଯାଉଛନ୍ତି । ଫଳରେ ଅନ୍ୟାନ୍ୟ ସଂସ୍ଥା ପ୍ରତି ତାଙ୍କ ମନରେ ଘୃଣା ଓ ଦ୍ୱେଷଭାବ ଜାତ ହେଉଛି । ତେଣୁ ସେ ପ୍ରକାର ଅନୁଷ୍ଠାନର ପଦାଧି-କାରୀମାନଙ୍କୁ ମୁଁ ଦୂରରୁ ପ୍ରଣାମ କରୁଛି । ମୁଁ ଆଜି ଯାଏଁ କୌଣସି ଅଖିଳ ଭାରତୀୟ ସଂସ୍ଥାର ସଦସ୍ୟ ହୋଇ ନାହିଁ । ପରେ କ'ଣ ହେବ, ତାହା ପରମେଶ୍ୱର ଜାଣନ୍ତି । ଯେଉଁ ବ୍ୟକ୍ତି ଜଣେ ପ୍ରଖ୍ୟାତ ନେତା ହେବାର ବାସନା ମନରେ ପୋଷଣ କରନ୍ତି, ସେ ଦୁଇ ଚାରିଟି ସଂସ୍ଥାର ପଦାଧିକାରୀ ରୂପେ ରହିବାକୁ କୌଣସି ମତେ ଆୟୋଜନ କରୁଛନ୍ତି; କିନ୍ତୁ ମୁଁ ଏ ପ୍ରକାର ଆବଶ୍ୟକତା ଅନୁଭବ କରୁଛି କି ନାହିଁ, ତାହା ମୋର ଭବିଷ୍ୟତ କର୍ମହିଁ ନିର୍ଦ୍ଧାରଣ କରିବ ।

ଶିଷ୍ୟ କରିବା ବିଷୟରେ ମୁଁ ମୋର ନିଷ୍ପତ୍ତି ପାଠକମାନଙ୍କୁ ଜଣାଇଦେବା ଉଚିତ । ଏ ସମ୍ବନ୍ଧରେ ମୁଁ ବିଶେଷ ବ୍ୟାଖ୍ୟା କରିବାକୁ ଚାହେଁ ନାହିଁ । ତେବେ ଯା' ହେଉ ବୋଲି ଆଜିକାଲି ଏହି ପବିତ୍ର ତଥା ପରମାର୍ଥ କାର୍ଯ୍ୟ ଗୋଟିଏ ପ୍ରକାର ବେପାରରେ ପରିଣତ ହୋଇଗଲାଣି । ଯୁଗର ପ୍ରଭାବ ଫଳରେ ପ୍ରତ୍ୟେକ କାର୍ଯ୍ୟରେ ବିକୃତି ଆସି ଯାଇଛି । ତେଣୁ ଏଥିପାଇଁ ମୁଁ କାହାକୁ ଦୋଷ ଦେଉ ନାହିଁ । ଗୁରୁ ହେବାର କାମନା ସମସ୍ତଙ୍କ ହୃଦୟରେ ଉଙ୍କି ମାରୁଥାଏ । ମୁଁ ମଧ୍ୟ ସେ ପ୍ରକାର ଲାଳସାରୁ ମୁକ୍ତ ନୁହେଁ; କିନ୍ତୁ ଗୁରୁପଦରେ ଅଭିଷିକ୍ତ ହେବାପାଇଁ ମୁଁ ଅଦ୍ୟାପି ଯୋଗ୍ୟ ହୋଇ ନାହିଁ । ମୁଁ ଜୀବନରେ ଏକମାତ୍ର ଶିଷ୍ୟ ପ୍ରସ୍ତୁତ କରିଛି । ଏ ସମ୍ବନ୍ଧରେ 'ଭାଗବତ କଥା'ର ପ୍ରଥମ ଖଣ୍ଡରେ ଏହାର ସୂଚନା ଦେଇଛି । ଭବିଷ୍ୟତରେ କ'ଣ ହେବ, ତାହା ସର୍ବାନ୍ତର୍ଯ୍ୟାମୀ ପରମେଶ୍ୱର ଜାଣନ୍ତି ।

ମୁଁ ଆଉ ଗୋଟିଏ କଥା ପାଠକମାନଙ୍କୁ କହି ଦେବାକୁ ଚାହେଁ ଅବଶ୍ୟ ତାହା ନିତାନ୍ତ ଘୃଣିତ ଏବଂ ଲଜ୍ଜାଜନକ ବିଷୟ । 'ଭାଗବତ କଥା'ର ପାଠକ ପାଠିକାଙ୍କ ମଧ୍ୟରେ ଅନେକ ସାନଭଉଣୀ ଓ ସାନଭାଇ ଥିବେ । ସେମାନଙ୍କ ଆଗରେ ମୋର ଜୀବନ ଚରିତ ପ୍ରକାଶିତ ହେବା ଉଚିତ ନୁହେଁ । ତଥାପି ଲେଖକ ପାଠକ ପାଠିକାଙ୍କଠାରେ ନିଜର କୌଣସି ତଥ୍ୟ ଗୋପନ ରଖିବା ଉଚିତ ନୁହେଁ । ଏହାର ଉଦାହରଣ ହେଉଛନ୍ତି—କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ । ସେ ନିଜର ଉତ୍ପତ୍ତି, ପୁତ୍ର ଶୁକଦେବଙ୍କ ଜନ୍ମ, ପାଣ୍ଡୁ, ଧୃତରାଷ୍ଟ୍ର ଓ ବିଦୁରଙ୍କ ଜନ୍ମ ସମ୍ବନ୍ଧରେ ନିଜ ପାଠକ ପାଠିକାଙ୍କ ଆଗରେ ସତ୍ୟଭାଷଣ କରିଛନ୍ତି । ଆହୁରି ମଧ୍ୟ ଜଣାଯାଏ ଯେ, ପାଠକମାନେ ଲେଖକ ସମ୍ବନ୍ଧରେ ସବୁକିଛି ଜାଣିବା ପାଇଁ ସର୍ବଦା ଉତ୍ସୁକ ରହନ୍ତି ।

କଥା ହେଲା, ପୁଣ୍ୟ କର୍ମକୁ ସର୍ବଦା ଗୋପନ ରଖିବା ଉଚିତ । ତେଣୁ ନିଜ ପୁଣ୍ୟକୁ ଗୋପନ ରଖିବା ଆଦୌ ପାପ ନୁହେଁ; କିନ୍ତୁ ପୁଣ୍ୟକଥା ବର୍ଣ୍ଣନା କରିବାବେଳେ ଅଜ୍ଞାତ ଭାବରେ ଆତ୍ମପ୍ରଶଂସା ଓ ଅତିଶୟୋକ୍ତି ବର୍ଣ୍ଣନା ହୋଇଯାଏ । ତାହା ଅତ୍ୟନ୍ତ

ଦୋଷାବହ । ପୁଣ୍ୟ ଆଖ୍ୟାନ କଥନରେ ପୁଣ୍ୟକ୍ଷୟ ହୋଇଥାଏ ଏବଂ ପାପକଥା ପ୍ରକାଶରେ ପାପ ମଧ୍ୟ କ୍ଷୟ ହୋଇଯାଏ । ପାଠକ ପାଠିକାମାନେ ଲେଖକ ସହିତ ମୈତ୍ରୀପୂର୍ଣ୍ଣ ସମ୍ପର୍କ ରଖିବାକୁ ଗୃହାନ୍ତି । ତେଣୁ ସେମାନେ ଲେଖକର ଦୋଷଗୁଡ଼ିକ ଉପରେ ଅଯଥା ଦୋଷାରୋପ କରନ୍ତି ନାହିଁ ।

ପୂର୍ବ ଜନ୍ମର ସଂସ୍କାର ଫଳରେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ ଲାଗି ମୋ' ମନରେ ଅଭିଳାଷ ଜାଗ୍ରତ ହୋଇଥିଲା । ଅବଶ୍ୟ ମୁଁ ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀ ହେବାର ସଫଳତା ହାସଲ କରିପାରି ନାହିଁ ସତ; କିନ୍ତୁ ଅଦ୍ୟାପି ଯଥାସମ୍ଭବ ଚେଷ୍ଟା ଫଳରେ ମୁଁ ମୋର ବ୍ରହ୍ମଚର୍ଯ୍ୟ ବ୍ରତ ଅତୁଟ ରଖି ପାରିଛି ।

ହେ ପାଠକଗଣ, ଆପଣମାନେ ପୁରାଣରେ ଅନେକ ମୁନିଙ୍କ ଜୀବନ ଚରିତ୍ର ପାଠ କରିଥିବେ । କେତେକ ମହାମନସ୍ୱୀ ମୁନି ନାରୀର ପ୍ରଲୋଭନରୁ ନିଜକୁ ରକ୍ଷା କରି ପାରି ନାହାନ୍ତି; କିନ୍ତୁ ମୁଁ ମୋର ପ୍ରତିଜ୍ଞାରୁ କେବେହେଲେ ବିଚଳିତ ହୋଇ ନାହିଁ । ଅବଶ୍ୟ ଛୋଟ ଛୋଟ କୋମଳମତି ପିଲାମାନଙ୍କୁ ମୁଁ ଅତ୍ୟଧିକ ସ୍ନେହ କରେ । ପିଲାଟି ଦିନରୁ ମୋର ମନର ଏ ଅବସ୍ଥା ଅତୁଟ ରହିଛି । ପ୍ରଥମେ ପ୍ରଥମେ ଅବଶ୍ୟ ପିଲାମାନେ ମୋର ଲମ୍ବ ଦାଢ଼ି ଦେଖି ମୋ' ନିକଟକୁ ଆସିବା ଲାଗି ସଙ୍କୋଚ କରନ୍ତି; କିନ୍ତୁ ଯେତେବେଳେ ସେମାନେ ମୋ' ସ୍ୱଭାବ ସହିତ ପରିଚିତ ହୋଇ ଯାଆନ୍ତି, କେବେହେଲେ ସେମାନେ ମୋ' ପାଖ ଛାଡ଼ନ୍ତି ନାହିଁ । ସ୍ନେହଶୀଳ ଅବୋଧ ବାଳକମାନଙ୍କଠାରେ ମୁଁ ଭଗବାନ ନାରାୟଣଙ୍କ ସ୍ଥିତି ଉପଲବ୍‌ଧି କରିଥାଏଁ ।

ମୁଁ ମୋ' ଜୀବନର ଅନେକଦିନ ତଳର ଗୋଟିଏ ଘଟଣା ଉଲ୍ଲେଖ କରେ । ସେ ଘଟଣାଟିକୁ ମୁଁ ଆଦୌ ଭୁଲିନି । ସେତେବେଳେ ମୁଁ ବଲ୍‌କଲ ଲେଙ୍ଗୁଟି ମାତ୍ର ପରିଧାନ କରୁଥିଲି । ଶରୀରରେ ଆଉ କୌଣସି ବସ୍ତ୍ର ଧାରଣ ନ କରିବା ଫଳରେ ମୋର ସର୍ବାଙ୍ଗ କଳାକାଠ ପଡ଼ି ଯାଇଥିଲା । ମୋର ଚେହେରା ଏପରି ବିକୃତ ହୋଇ ଯାଇଥିଲା ଯେ, ଅନ୍ଧାର ରାତିରେ ମୋତେ କେହି ଦେଖି ପକାଇଲେ, ପ୍ରେତ ବୋଲି ଭାବି ଡରିଯାଉଥିଲେ । ମନ୍ଦିରରେ ଯାହା ଖେଚଡ଼ି ଅନ୍ନ ମିଳୁଥିଲା ତାହାକୁ ଆନନ୍ଦରେ ଖାଇ ସୁଖରେ କାଳ-ଯାପନ କରୁଥିଲି । କାହା ଆଗରେ ହାତପାତି ମାଗିବାକୁ ମୁଁ ଲଜ୍ଜା ଅନୁଭବ କରୁଥିଲି । ଭଗବାନ୍ ମୋତେ ଜନ୍ମରୁ ଭିକ୍ଷୁକ କରି ଜନ୍ମ ଦେଇଥିଲେ । ଭିକ୍ଷାରେ ହିଁ ମୋର ଜୀବନ ନିର୍ବାହ ହୋଇ ଆସିଛି । ବଦ୍ରୀନାଥଙ୍କ ମନ୍ଦିରରେ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ଭିକ୍ଷା ଦେଇଥାନ୍ତି ।

ତିନିକର ଘଟଣାକୁ ବର୍ଣ୍ଣନା କରି ରହିପାରୁ ନାହିଁ । ବଦ୍ରୀନାଥଙ୍କ ମନ୍ଦିରର ଦ୍ୱାର ବନ୍ଦ ହୋଇଗଲା । ମନ୍ଦିରରୁ ସମସ୍ତ ଲୋକ ଚାଲିଗଲେ । ମୁଁ କେବଳ ବସି ରହିଥିଲି । ଏହି ସମୟରେ ଦୁଇଟି ସୁନ୍ଦର ପିଲା, ହାତରେ ଦୁଇଟି ପଦ୍ମଫୁଲ ଧରି ମନ୍ଦିରରେ ପ୍ରବେଶ

କଲେ । ସେ ଦୁହିଁଙ୍କ ରୂପମାଧୁରୀରେ ମୁଁ ମନ୍ତ୍ରମୁଗ୍ଧ ହୋଇଗଲି । ପିଲା ଦୁହିଁଙ୍କୁ ପାଞ୍ଚ ଛଅ ବର୍ଷ ହେବ ଗୋଟିଏ ପୁଅ ଓ ଅନ୍ୟଟି ଝିଅ । ସେ ଦୁହେଁ ଆସି ମନ୍ଦିରର ଦ୍ୱାର ଠେଲି, ତା' ଭିତରକୁ ଫୁଲ ଦୁଇଟି ଫିଙ୍ଗି ଦେଇ ସେଠାରେ ଖେଳାଖେଳି କଲେ । ମୁଁ ପିଲା ଦୁହିଁଙ୍କୁ ଦେଖି, ତାଙ୍କୁ ମନେ ମନେ ରାଧାକୃଷ୍ଣ ବୋଲି ଭାବନେଇ, ମନ୍ତ୍ରମୁଗ୍ଧ ହୋଇ ତାଙ୍କର ଆଡ଼କୁ ଏକଧ୍ୟାନରେ ଚାହିଁ ରହିଲି । କେତେ ସମୟ ଖେଳାଖେଳି ସାରି ଝିଅଟି ମୋ' ପାଖକୁ ଆସି କହିଲା—"ଚାଲ, ଆମ ଘରକୁ ଯିବା ଚାଲ ।"

ମୁଁ ବିନା ଦ୍ୱିରୁକ୍ତିରେ ପିଲା ଦୁହିଁଙ୍କ ପଛେ ପଛେ ଚାଲିଲି । ମନ୍ଦିରର ପରିସର ମଧ୍ୟରେ ତାଙ୍କ ଘର । ମୁଁ ତାଙ୍କ ଘରକୁ ଯିବାମାତ୍ରେ ଝିଅଟି ଆଣି ଖଣ୍ଡିଏ ଆସନ ବିଛାଇ ଦେଇ, ମୋତେ ବସିବାକୁ କହିଲା । ମୁଁ ବସିବାରେ ଅଳ୍ପ ସମୟ ମଧ୍ୟରେ ପଚିଶ ଛବିଶ ବର୍ଷ ବୟସର ଜଣେ ତରୁଣୀ ଗୋଟିଏ କପ୍‌ରେ ଚାହା ଓ ଅନ୍ୟ ପାତ୍ରରେ କିଛି ଜଳଖିଆ ଆଣି ମୋ' ଆଗରେ ଥୋଇ ଦେଇଗଲା । ମୁଁ ଅବଶ୍ୟ ଜୀବନରେ ଖୁବ୍ କମ୍ ଚାହା ପିଇଛି; କିନ୍ତୁ ସେଦିନ କିଛି ନ କହି ମୁଁ ଜଳଖିଆତକ ଖାଇସାରି ଚାହା ପିଇ ଦେଲି । ବିଦେଶରେ ଅପରିଚିତ ବାଳକ ଦୁହିଁଙ୍କଠାରୁ ଆଦର ପାଇ, ମନେ ମନେ ଯେତେ ଆନନ୍ଦିତ ହୋଇଥିଲି, ତାକୁ ବ୍ୟକ୍ତ କରିବା ପାଇଁ ମୋର ଭାଷା ନାହିଁ । ତା'ପରେ ମୁଁ ଅନେକବାର ବଦ୍ରୀନାଥ ଯାଇ, ପିଲା ଦୁହିଁଙ୍କ ସମ୍ବନ୍ଧରେ ପଚରା ଉଚରା କରିଛି, ମାତ୍ର ସଠିକ ଭାବରେ କେହି ମୋତେ ସେମାନଙ୍କ ସମ୍ପର୍କରେ କହି ପାରିଲେ ନାହିଁ । ଯା' ହେଉ, ସେ ପିଲା ଦୁହିଁଙ୍କଠାରେ ମୁଁ ଭଗବତ୍ ସତ୍ତାର ସାକ୍ଷାତ୍ ପାଇଛି, ତାହାହିଁ ମୋର ଆନନ୍ଦ ।

କିଛିଦିନ ପରେ ଏହାର ଠିକ୍ ବିପରୀତ ଗୋଟିଏ ଘଟଣା ଘଟିଲା ବମ୍ବେରେ । ମୁଁ ମୋର ବନ୍ଧୁଙ୍କ ସହିତ ଜଣେ ଗୁଜରାଟୀ ବ୍ୟବସାୟୀଙ୍କ ଘରେ ବସିଥିଲି । ତାଙ୍କ ପଡ଼ଶା ଘରୁ ଦୁଇଟି ପୁଅ ଝିଅ ଆସି ଆମରି ଆଗରେ ଖେଳୁଥିଲେ । ପିଲା ଦୁଇଟି ଖୁବ୍ ସୁନ୍ଦର । ସେ ଦୁହେଁ ଖେଳ ମଝିରେ ଧାଇଁ ଆସି ମୋ' କୋଳରେ ବସି ପଡ଼ୁଥିଲେ । ଅନ୍ୟମାନେ ମନା କଲେ ମଧ୍ୟ ସେ ଦୁହେଁ ତାହା ନ ମାନି, ବାରମ୍ବାର ଆସି ମୋ' କୋଳରେ ବସୁଥିଲେ; କିନ୍ତୁ ସେ ଦୁହିଁଙ୍କୁ ଦେଖି, ମୋ' ମନରେ ବଦ୍ରୀନାଥର ଘଟଣା ପରି, ଭଗବଦ୍ ଧାରଣା ଜାତ ହେଲାନାହିଁ । ବରଂ ସେ ଦୁହିଁ ସଂସ୍ପର୍ଶରେ ମୋ' ମନ ଚଞ୍ଚଳ ହୋଇ ଯାଇଥିଲା । ପରେ ତାହା ଚିନ୍ତାକରି ମୋ' ମନରେ ଗ୍ଲାନି ଜାତ ହେଲା । ମୁଁ ସଙ୍ଗେ ସଙ୍ଗେ ସ୍ନାନ କରି ମନକୁ ପବିତ୍ର କଲି ।

ଏ ଦୁଇଟି ଘଟଣାର ବିଶ୍ଳେଷଣ କରିବାର ଅଭିପ୍ରାୟ ହେଉଛି, ଏକପ୍ରକାର ଘଟଣା ଘଟିଥିଲେ ମଧ୍ୟ, ମୋ' ମନରେ ଏକପ୍ରକାର ଧାରଣା ଜାତ ହେଲା ନାହିଁ କାହିଁକି ? ହୁଏତ ତାହା ସ୍ଥାନର ବୈଶିଷ୍ଟ୍ୟ ଯୋଗୁ ହୋଇ ପାରିଥାଏ ।

ମୁଁ ପିଲାମାନଙ୍କୁ ଅତ୍ୟଧିକ ସ୍ନେହ କରୁଥିଲି । ଏବେ ମଧ୍ୟ ପିଲାଙ୍କ ପ୍ରତି ମୋର ମୋ' ମନରେ ସ୍ନେହ ଅତୁଟ ରହିଛି; କିନ୍ତୁ ବେଳେ ବେଳେ କାହିଁକି କେଜାଣି, ମୋର ସ୍ୱଭାବରେ ପରିବର୍ତ୍ତନ ଘଟିଛି । ମୁଁ ମୋ ମନକୁ ଅଧୀନ କରି ପାରିନାହିଁ । ପିତା ପୁତ୍ରୀର ସମ୍ପର୍କ ସ୍ଥାନରେ ବେଳେ ବେଳେ ମନ ବିଚଳିତ ହୋଇଛି । ଏହାର କାରଣ ଅବଶ୍ୟ ସ୍ଥାନର ବୈଶିଷ୍ଟ୍ୟ ବୋଲି ମନେ ହୁଏ । ଶାସ୍ତ୍ରକାରମାନେ କହିଛନ୍ତି—

"ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନାଂ ବିବିକ୍ତାସନୋ ଭବେତ୍ ।

ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସ ମପି କର୍ଷତି ।"

ପ୍ରଥମେ ପ୍ରଥମେ ମୁଁ ନିଜକୁ ଜଣେ ସାଧକ ବୋଲି ମନେ କରୁଥିଲି । ଅବଶ୍ୟ ସେତେବେଳେ ମୋର ସେପରି ମାନ୍ ସମ୍ମାନ ଥିଲା । ଧୀରେ ଧୀରେ ଲୋକମାନଙ୍କ ମଧ୍ୟରେ ମୋର ସମ୍ମାନ ବୃଦ୍ଧି ପାଇଲା । ଲୋକମାନେ ମୋତେ ମହାତ୍ମା ବୋଲି ଭାବିଲେ । ଏ' ଦୁନିଆରେ ସମସ୍ତେ ଅନ୍ଧାନୁକରଣ କରି ଚାଲିଛନ୍ତି । ଜଣେ ଦି' ଜଣ ଯାହା କଲେ, ଅନ୍ୟମାନେ ବିନା ବିଚାରରେ ତା'ର ପଛରେ ଅନୁଧାବନ କରନ୍ତି । କେହି ପ୍ରକୃତ କଥାକୁ ବିଚାର କରେ ନାହିଁ । ଦଶଜଣ ଯଦି ଜଣକ ପାଦପୂଜା କରନ୍ତି, ତେବେ ଅନ୍ୟମାନେ କିଛି ବିଚାର ନ କରି, ତାହାହିଁ କରିଥା'ନ୍ତି ।

ଲୋକମାନେ ମାନନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ; କିନ୍ତୁ ସାଧକ ଯେତେବେଳେ ନିଜକୁ ଖୁବ୍ ବଡ଼ ବୋଲି ମନେ କରିବ, ସେତେବେଳେ ତା'ର ପତନ ଅବଶ୍ୟମ୍ଭାବୀ । ସାଧକମାନେ ଜୀବନରେ ଅନେକ ଚମତ୍କାରିତା ଦେଖାଇଥା'ନ୍ତି । କିନ୍ତୁ ଯେତେବେଳେ ସେମାନଙ୍କ ମନରେ ଅହଙ୍କାର ଉଦୟ ହେବ, ତାହାକୁ ଦୃଢ଼ତାର ସହିତ ଦବାଇ ଦେବା ଉଚିତ । ନୋହିଲେ, ପତନ ଅନିବାର୍ଯ୍ୟ ହୋଇପଡ଼େ । ସେତେବେଳେ ସେ ପରମାର୍ଥ ଚିନ୍ତାରେ ମଗ୍ନ ନ ହୋଇ, ସ୍ୱାର୍ଥପର ହୋଇଉଠେ । ଆଧ୍ୟାତ୍ମିକତା ପରିବର୍ତ୍ତେ ସେ ବେପାର କରିବସେ ।

କିଛିଦିନ ସଂଯମ ସାଧନା କରିବା ଫଳରେ ମୋ' ମନରେ ଅଭିମାନ ପ୍ରବେଶ କଲା । ମୁଁ ନିଜକୁ ଜଣେ ଶ୍ରେଷ୍ଠ ସଂଯମୀ ବୋଲି ଭାବି ବସିଲି । ପ୍ରକୃତରେ, ଲୋକଙ୍କ ସ୍ପର୍ଶରେ ମୋ' ମନରେ କୌଣସି ପ୍ରକାର ବିକାର ବା ଅବିକାର କିଛି ଜାତ ହୁଏନାହିଁ । କିନ୍ତୁ ପରେ ମୁଁ ସ୍ପଷ୍ଟ ଅନୁଭବ କଲି; ତାହାହିଁ ମୋ' ମନରେ ବିଭ୍ରାନ୍ତି ।

ପାଠକଗଣ, ଯେଉଁ ପ୍ରସଙ୍ଗ କହିବାପାଇଁ ମୁଁ ଏ' ଗୌରଚନ୍ଦ୍ରିକା ଆରମ୍ଭ କରିଛି, ତାହାକୁ ସ୍ପଷ୍ଟଭାବରେ ଉଲ୍ଲେଖ କରୁଛି ।

ଜଣେ ସ୍ତ୍ରୀଲୋକଙ୍କ ସହିତ ମୋର ସମ୍ପର୍କ ଥିଲା । ସେ ମୋ' ସହିତ ଭଗବତ୍ ସମ୍ପର୍କ ରଖିଥିଲେ ବୋଲି କହୁଥିଲେ । ଦିନେ ଦୈବାତ୍ ତାଙ୍କ ଶରୀର ସହିତ ମୋର

ଝୁର୍ଣ୍ଣାଲିଙ୍ଗନ ହୋଇଗଲା । ତା'ଫଳରେ ମୋ' ଚିତ୍ତରେ ଶୃଙ୍ଖଳା ଖେଳିଗଲା । ସେହିଦିନ ମୁଁ ଅନୁଭବ କଲି ଯେ, ହୃଦରୋଗ କାହାକୁ କୁହାଯାଏ । ସେ ଅବଶ୍ୟ ଚାଲିଗଲେ; କିନ୍ତୁ ତାଙ୍କ ସ୍ୱରୂପ ମୋର ମାନସ ପଟଳକୁ ଅବରୁଦ୍ଧ କରି ରଖିଲା । ତାଙ୍କ ବିଷୟରେ ତଥା ସେହି ଘଟଣା ମୋ' ମନରେ ନାନା ଉତ୍ପାତ ଘଟାଇଲା । ମୁଁ ତାଙ୍କୁ ଯେତେ ଭୁଲି ଯିବାକୁ ଚେଷ୍ଟା କଲି, ଆଦୌ ଭୁଲି ପାରିଲି ନାହିଁ । ଭଜନ, ସ୍ମରଣ, କୀର୍ତ୍ତନ, ଭୋଜନ ଓ ଶୟନ ସବୁ ସମୟ ସେ ମୋ' ମନକୁ ଆକ୍ରାନ୍ତ କରି ରଖିଲେ । ସବୁକିଛି କାର୍ଯ୍ୟ ମୁଁ ଯନ୍ତ୍ରଚାଳିତ ପରି କରୁଥିଲି ସତ; କିନ୍ତୁ ମନଟି ତାଙ୍କଠାରେ ଲାଗି ରହିଲା । ମୋ' ମନରେ ଏତେଦୂର ମାନସିକ ଗ୍ଲାନି ଜାତ ହେଲା ଯେ, ମୁଁ ସ୍ଥିର ହୋଇ ରହିପାରିଲି ନାହିଁ । ଶେଷକୁ 'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ' ମନ୍ତ୍ର ଜପ କରିବାକୁ ଲାଗିଲି । ଯେତେବେଳେ ଯାଏଁ ଏହି ମନ୍ତ୍ର ଜପ କଲି, ମନରେ ସ୍ଥିରତା ଆସୁଥାଏ; ତା'ପରେ ଅବସ୍ଥା ପୂର୍ବପରି ହେବାକୁ ଲାଗିଲା । ଦିନେ ଦୁଇଦିନ ବିତିଗଲା । ତୃତୀୟ ଦିନ ମୁଁ ସ୍ନାନ କରିବା ପରେ, ହଠାତ୍ ଭାଗବତର ଗୋଟିଏ ଶ୍ଳୋକ ମୋର ମନେ ପଡ଼ିଗଲା ।

"ବିକ୍ରୀଡ଼ିତଂ ବ୍ରଜବଧୂଭିରିଦଂ ଚ ବିଷ୍ଣୋଃ
ଶ୍ରଦ୍ଧାନ୍ୱିତୋଽନୁଶୃଣୁୟାଦଥ ବର୍ଣ୍ଣୟେଦ୍ୟଃ ।

ଭକ୍ତିଂ ପରାଂ ଭଗବତି ପ୍ରତିଲଭ୍ୟ କାମଂ
ହୃଦ୍‌ରୋଗମାଶ୍ୱପହିନୋତ୍ୟଚିରେଣ ଧୀରଃ ।"

ଏହି ଶ୍ଳୋକଟିକୁ ଜୀବନରେ ଅନେକବାର ପଢ଼ିଛି, କିନ୍ତୁ ସେତେବେଳେ ତା'ର ଅର୍ଥ ମୋ ଆଗରେ ଏକ ନୂତନ ରୂପରେ ପ୍ରତିଭାତ ହେଲା । ମୋର ମନେ ହେଲା, ସ୍ୱୟଂ ଭଗବାନ୍ ଆସି ମୋତେ ହୃଦ୍‌ରୋଗର ଔଷଧ ବତାଇ ଦେଇଗଲେ । ମନେହେଲା କୋଳରେ ପିଲାଟିକୁ ଧରି ମୁଁ ସାରା ନଗରର ପିଲାଟିକୁ ଖୋଜି ବୁଲୁଛି । ସଙ୍ଗେ ସଙ୍ଗେ ରାସପଞ୍ଚାଧ୍ୟାୟୀ ସଙ୍କଳ୍ପ ପୂର୍ବକ ପାଠ କଲି । ମୋ ମନର ପ୍ରଜ୍ୱଳିତ ଅଗ୍ନିରେ ଯେପରି ଜଳବୃଷ୍ଟି ହେବାକୁ ଲାଗିଲା । ସେହିଦିନଠାରୁ ନିୟମିତ ଭାବରେ ମୁଁ ରାସପଞ୍ଚାଧ୍ୟାୟୀ ପାଠ କରିବାକୁ ଲାଗିଲି । ତା' ପରଠାରୁ ମୋ ମନରେ ଆଉ ସେପରି ବିକଳତା ଦେଖାଗଲା ନାହିଁ । ମୁଁ ବେଶ୍ ଅନୁଭବ କଲି, କାମ ଗୋଟିଏ ହୃଦରୋଗ ଏବଂ ଶ୍ରୀକୃଷ୍ଣଙ୍କ ନାମ ତା'ର ଅବ୍ୟର୍ଥ ମହୌଷଧି ।

ସଂସାରରେ ବୋଧହୁଏ ପ୍ରତ୍ୟେକ ଲୋକ ଏପରି ହୃଦ୍‌ରୋଗରେ ପୀଡ଼ିତ ହୋଇଥିବେ ଅଥବା ଅନ୍ୟ କୌଣସି ରୋଗରେ ଆକ୍ରାନ୍ତ ହୋଇଥିବେ । ମୋର ଧାରଣା— କାମନାଯୁକ୍ତ ହୋଇ ପରପୁରୁଷ ବା ପରନାରୀ ପ୍ରତି ଅବୈଧ ଚିନ୍ତା ହିଁ ହେଉଛି— ହୃଦ୍‌ରୋଗ । କେତେକ ପରମ ସତୀସାଧ୍ୱୀ ନାରୀ ଅଥବା ବୀତରାଗୀ ବ୍ୟକ୍ତିଙ୍କ ବ୍ୟତୀତ ପ୍ରାୟ ସମସ୍ତେ ଏ' ପ୍ରକାର ହୃଦ୍‌ରୋଗରେ ପୀଡ଼ିତ ହୋଇଥିବା ଆଦୌ ଅସମ୍ଭବ ନୁହେଁ । ସେ

ପ୍ରକାର ଚଞ୍ଚଳ ଚିତକୁ ଚତୁର୍ବେଶ୍ୱର ଭଗବାନ୍, ଶ୍ରୀକୃଷ୍ଣଙ୍କ ଗୁଣଲୀଳାରେ ଲଗାଇ ଦେବା ହେଉଛି—ହୃଦ୍‌ରୋଗର ପ୍ରକୃତ ଔଷଧ । ଏହାଫଳରେ ମନର ମଳିନତା ଧୀରେ ଧୀରେ ଦୂର ହୋଇଯାଏ ।

ବିଧାତାଙ୍କ ମାନସିକ ସୃଷ୍ଟି ଫଳରେ ଜଗତର ଅଭିବୃଦ୍ଧି ନ ହେବାରୁ, ସେ ମୈଥୁନ ସୃଷ୍ଟି ଆରମ୍ଭ କରିଥିଲେ । ମିଥୁନ ଭାବରେ ରହିବାକୁ ପ୍ରତ୍ୟେକଙ୍କ ମନରେ ସହଜାତ ପ୍ରବୃତ୍ତି ରହିଛି । କିନ୍ତୁ ସେହି ମୈଥୁନ ଭାବଯୁକ୍ତ ମନକୁ ଶ୍ରୀକୃଷ୍ଣଙ୍କ ଆଡ଼କୁ ଫେରାଇ ନେଇ ପାରିଲେ, ଜୀବନର ସାର୍ଥକତା ଆସେ ।

ଭକ୍ତି, ପ୍ରେମ, ଶ୍ରଦ୍ଧା, ଅନୁରାଗ, ଆସକ୍ତି, ଓ ରତି ମଧ୍ୟରେ ପାର୍ଥକ୍ୟ ନିତାନ୍ତ ଅଳ୍ପ । ଜ୍ଞାନଶକ୍ତି, ପ୍ରେମଶକ୍ତି ଓ କର୍ମଶକ୍ତି ମଧ୍ୟରୁ ନିଶ୍ଚୟ କୌଣସି ଗୋଟିଏ ଶକ୍ତି ମନୁଷ୍ୟକୁ ଆଶ୍ରୟ କରିଥାଏ । ଜ୍ଞାନ ମସ୍ତିଷ୍କର ଧର୍ମ; ପ୍ରେମ, ଶ୍ରଦ୍ଧା, ଭକ୍ତି ହୃଦୟର ତଥା କର୍ମ ହେଉଛି—ଇନ୍ଦ୍ରିୟର ଧର୍ମ । ଅବଶ୍ୟ ଏହି ତିନୋଟି ଯାକ ଶକ୍ତି ଯାହାଠାରେ ବିଦ୍ୟମାନ, ସେ ଏକ ପୂର୍ଣ୍ଣ ବ୍ୟକ୍ତି । ଏହି ତିନୋଟି ଶକ୍ତିର ସମନ୍ୱୟ ଜୀବନରେ ଏକାନ୍ତ ଆବଶ୍ୟକ । ଏଥିରୁ ଗୋଟିଏ ଊଣା ହେଲେ, ଜୀବନ ଅପୂର୍ଣ୍ଣ ହୋଇଥାଏ । ତେଣୁ ମହାନ୍ ଆତ୍ମର୍ଷିମାନେ ନିଜ ନିଜର ଜୀବନରେ ଏହି ତ୍ରିଶକ୍ତିକୁ ସମନ୍ୱୟାତ୍ମକ ଭାବରେ ଗ୍ରହଣ କରିବା ହେଉଛି—ସାର୍ଥକ ମନୁଷ୍ୟତା । ଏହାଫଳରେ ଅନ୍ତଃକରଣରେ ଶୁଦ୍ଧତା ଆସିଥାଏ । ଶୁଦ୍ଧ ଅନ୍ତଃକରଣରେ ଉପାସନା କରିବାକୁ ମନରେ ଶ୍ରଦ୍ଧା ଜାତହୁଏ । କେତେକ କହନ୍ତି—ଏହି ତିନିପ୍ରକାର ମାର୍ଗ ସ୍ୱତନ୍ତ୍ର । ମୀମାଂସକଙ୍କ ମତରେ—କର୍ମରୁ ହିଁ ମୁକ୍ତି । ତେଣୁ ବଞ୍ଚିଥିବା ଯାଏ, କର୍ମ କରିଚାଲ । କର୍ମ କହିଲେ—କୃଷି, ଗୋରକ୍ଷା ଓ ବାଣିଜ୍ୟ ବୁଝେଁ । ସେମାନଙ୍କ ମତରେ ବେଦବିଧି ଅନୁସାରେ ଯଜ୍ଞକର୍ମ ସମ୍ପାଦନ କର । ତା' ବ୍ୟତୀତ ଅନ୍ୟାନ୍ୟ କର୍ମ କେବଳ ବନ୍ଧନର କାରଣ । ଶୁଭକର୍ମ କଲେ, ସ୍ୱର୍ଗରେ ସୁଖଭୋଗ କରିବ, ପୁଣ୍ୟକ୍ଷୟ ହେଲେ, ପୁଣି ପବିତ୍ର କୁଳରେ ଜନ୍ମ ହେବ । ସେମାନଙ୍କ ମତରେ ସ୍ୱର୍ଗରେ ସୁଖଭୋଗ ହିଁ ମୁକ୍ତି । ଅନ୍ୟମାନେ କହନ୍ତି—ଉପାସନାରେ ହିଁ ସକଳ ସିଦ୍ଧି ପ୍ରାପ୍ତ ହୋଇଥାଏ । ବୈଦିକୀ ଉପାସନାକୁ 'ପଞ୍ଚରାତ୍ର' ବିଧାନରେ କରାଗଲେ, ତାହା ଭକ୍ତି ନାମରେନାମିତ ହୁଏ । ଜ୍ଞାନମାର୍ଗୀଙ୍କ ମତରେ—ଜ୍ଞାନାର୍ଜନ ବିନା କର୍ମ, ଉପାସନା ଓ ଭକ୍ତିଆଦି ବ୍ୟର୍ଥ । ଜ୍ଞାନ ଲାଭରେ ହିଁ ମୁକ୍ତି ସମ୍ଭବ ହୋଇଥାଏ ।

କିନ୍ତୁ ଯେ କୌଣସି ମାର୍ଗ ଅବଲମ୍ବନ କଲେ ମଧ୍ୟ, ସେଥିରେ ଏହି ତିନୋଟିର ସମନ୍ୱୟ ହୋଇଥାଏ । ଯେଉଁମାନେ ନିଜ ବିଦ୍ୱତ୍ତା ପ୍ରଦର୍ଶନ କରିବାକୁ ସ୍ୱର୍ଦ୍ଧାନ୍ତ । ସେମାନେ କର୍ମ, ଭକ୍ତି, ଉପାସନା ଓ ଜ୍ଞାନ ମଧ୍ୟରେ ବିଭେଦ ଥିବାର ଧାରଣା କରିଥା'ନ୍ତି ।

ପ୍ରେମ ମାର୍ଗ ହେଉଛି—ସରଳ, ସ୍ୱାଭାବିକ ଏବଂ ଉପଯୋଗୀ କାହାରିକୁ ପ୍ରେମ ଶିଖାଇ ଦିଆଯାଏ ନାହିଁ । ତାହା ସ୍ୱତଃ ମନରେ ଜାତହୁଏ । ସଂସାରରେ ସମସ୍ତେ

ଯେ କୌଣସି ଗୋଟିଏ ବସ୍ତୁ ବା ବ୍ୟକ୍ତିଙ୍କୁ ପ୍ରେମ କରନ୍ତି । କାମୁକ ପୁରୁଷ ନିଜର ଅଭିଳାଷିଣୀ କାମିନୀଙ୍କୁ ଚିନ୍ତା କରେ । କ୍ରୋଧୀ ବ୍ୟକ୍ତି ଅହରହ ନିଜ ଶତ୍ରୁଙ୍କୁ ଏବଂ କ୍ଲେଷ୍ଟପ୍ରାଣୀ ଧନକୁ ହିଁ ଭଲ ପାଇଥାଏ ଇତ୍ୟାଦି ।

ଆମେମାନେ ଯାହା କହୁଥାଉଁ, ତାହାର ସ୍ୱରୂପ ପ୍ରଥମେ ନାଭିଚକ୍ରରେ ସୃଷ୍ଟି ହୁଏ । ପରେ ହୃଦୟଚକ୍ର ମଧ୍ୟ ଦେଇ ତାହା ବଚନ ରୂପେ କଣ୍ଠଚକ୍ରରୁ ନିର୍ଗତ ହୁଏ । ସେହି ଦୃଷ୍ଟିରୁ ସନ୍ଥ ଓ ମହାତ୍ମାମାନେ କହନ୍ତି— ଇଷ୍ଟଦେବଙ୍କୁ ଧ୍ୟାନ କର ଏବଂ ଇଷ୍ଟମନ୍ତ୍ର ଜପ କର । ଯେଉଁ ବ୍ୟକ୍ତି ଯେତିକି ଅଧିକ ମାତ୍ରାରେ ବିଷୟ ବାସନା ବିଷୟରେ ଚିନ୍ତା କରିବ, ସେ ସାଂସାରିକ ବନ୍ଧନରେ ଦୃଢ଼ରୁ ଦୃଢ଼ତରଭାବେ ବନ୍ଦୀ ହୋଇ ସଂସାର ସାଗରରେ ବୁଡ଼ିଯାଏ । ସେମାନେ ପର ନିନ୍ଦା, କରିବାକୁ ଅଧିକ ଭଲ ପାଆନ୍ତି । ତାହାହିଁ ସେମାନଙ୍କୁ ଅଧିକ ଆନନ୍ଦ ପ୍ରଦାନ କରେ । ତେଣୁ ଗୁରୁଜନମାନେ କହନ୍ତି—ମୌନ ରହି ଇଷ୍ଟମନ୍ତ୍ର ଜପ କର । ଥରେ ମାତ୍ର ଧ୍ୟାନସ୍ଥ ହୋଇ ଇଷ୍ଟମନ୍ତ୍ର ଉପରେ ଲାଗିଗଲେ, ଆଉ କୌଣସି କଥା କାନକୁ ଶୁଣାଯିବ ନାହିଁ ।

ଶୋଇଥିବା ସମୟରେ କାନ ଦୁଇଟି ଶରୀରରେ ଥିଲେ ମଧ୍ୟ ବାହାରର ଆଲୋଚନା ଶୁଣାଯାଏ ନାହିଁ । ସେ ସମୟରେ ଚକ୍ଷୁ ଅଞ୍ଜନ ସହିତ ଅନ୍ଧାର ଲୀନ ହୋଇଥାଏ । ସେହିପରି ଧ୍ୟାନରେ ମନ ଲାଗିଗଲେ, ଆଉ କିଛି ବାହାରର ବିଷୟ ଶୁଣାଯିବ ନାହିଁ । ଥରେ ମାତ୍ର ମନ ତନ୍ମୟତାରେ ବୁଡ଼ିଗଲେ, ଅନ୍ତ ଆନନ୍ଦର ସୀମା ରହେନାହିଁ । ଶମୀକମୁନି ଧ୍ୟାନସ୍ଥ ହୋଇ ଥିବାରୁ ପରୀକ୍ଷିତଙ୍କ ଡାକର ଶୁଣି ପାରିଲେ ନାହିଁ । ନାମ ଓ ରୂପ ବିଲୀନ ହୋଇଗଲେ, ଚକ୍ଷୁରେ ଏକାଗ୍ରତା ଜାତ ହୋଇଥାଏ । ତା'ର ଫଳରେ ସେହି ପ୍ରେମମୟ ମୂର୍ତ୍ତି ବ୍ୟତୀତ ଆଖିକୁ ଆଉ କୌଣସି ଦୃଶ୍ୟ ଦେଖାଯାଏ ନାହିଁ କିମ୍ବା ତାଙ୍କ ଚରିତ ବ୍ୟତୀତ ଆଉ କିଛି କାନକୁ ଶୁଣାଯାଏ ନାହିଁ ।

ଗୋସ୍ୱାମୀ ତୁଳସୀଦାସଙ୍କ ବିଷୟରେ ଶୁଣାଯାଏ—ସେ ନିଜ ପତ୍ନୀଙ୍କୁ ଅତ୍ୟଧିକ ପ୍ରେମ କରୁଥିବାରୁ, ତାଙ୍କୁ ଦେଖିବା ପାଇଁ ପୂର୍ଣ୍ଣଗର୍ଭା ନଦୀ ସ୍ରୋତରେ ସେ ଶବ ଉପରେ ବସି ନଦୀ ପାର ହୋଇଗଲେ । ଗୋଟିଏ ଅଜଗର ସାପକୁ ଦଉଡ଼ି ବୋଲି ମନେ କରି କାନ୍ଥ ଚଢ଼ିଗଲେ । ପ୍ରେରମ ବାସନା ମନରେ ଉଦ୍ରେକ ହେଲେ, ଆଲିଙ୍ଗନ ସୁଖ ପାଇବାଲାଗି ମନରେ ଅଧିକ ଆଗ୍ରହ ଜାତ ହୁଏ । ସେହିପରି ମାତାର ହୃଦୟରେ ସନ୍ତାନ ପ୍ରତି ଯେତେବେଳେ ବାତ୍ସଲ୍ୟପ୍ରେମ ଜାତ ହୁଏ, ସେତେବେଳେ ଶରୀରର ରକ୍ତ କ୍ଷୀର ହୋଇ ତା' ସ୍ତନରେ ବହିଯାଏ । ପତି-ପତ୍ନୀର ପ୍ରେମ ଫଳରେ ରଜବୀର୍ଯ୍ୟର ମିଳନ ହୋଇଥାଏ । ବଳଶାଳୀ ତଥା ବୀର୍ଯ୍ୟବନ୍ତ ପୁରୁଷହିଁ କାମିନୀକୁ ସୁଖ ଦେଇଥାଏ । ସେଇଥିପାଇଁ ଉପନିଷଦରେ କୁହାଯାଇଛି—"ନାୟମାତ୍ମା ବଳହୀନେ ଲଭ୍ୟଃ ।"

ପୁରୁଷମାନଙ୍କ ଶରୀରର ଦୁଇ ପ୍ରକାର ଗତି ହୋଇଥାଏ । ସାଂସାରିକ ପ୍ରେମ ଫଳରେ ଶରୀର ଅଧୋଗତି ହୋଇଥାଏ । ସେହି ପ୍ରେମ ଯେତେବେଳେ ଈଶ୍ୱରସ୍ଥ ହୋଇଯାଏ, ସେତେବେଳେ ପୁରୁଷ ଊର୍ଦ୍ଧ୍ୱରେତା ହୋଇଥାଏ । ଊର୍ଦ୍ଧ୍ୱରେତା ଯୋଗୀହିଁ 'ବ୍ରହ୍ମ'ଙ୍କ ସାକ୍ଷାତ୍କାର ଲାଭ କରିପାରେ । ଯେଉଁମାନେ ଊର୍ଦ୍ଧ୍ୱରେତା ନୁହଁନ୍ତି, ସେମାନେ ପରମାତ୍ମାଙ୍କ ସାକ୍ଷାତ୍କାର କରି ପାରନ୍ତି ନାହିଁ । ଅନେକ ସାଧୁ ବହୁଦିନ ଯାଏ ସାଧନାରତ ରହି ପୂଜା ଧ୍ୟାନ ଧାରଣାରେ ସଫଳ ହୋଇ ପାରନ୍ତି ନାହିଁ । କାରଣ ସେମାନେ ମନକୁ ଆୟତ୍ତ କରିପାରନ୍ତି ନାହିଁ । ସାଂସାରିକ ଚିନ୍ତନରେ ମନ ଅଧିକ ଚଞ୍ଚଳ ହୋଇଥାଏ ଏବଂ ମନରେ ଭୋଗ ଲିପ୍‌ସା ବଳବତୀ ହୋଇ ଉଠେ । ସାଂସାରିକ ଭୋଗରେ ଲିପ୍ତ ମନୁଷ୍ୟ ଯେତେ ଭଲ କାମ କଲେ ମଧ୍ୟ, ତା'ର ପରିଣାମ ଅଶାନ୍ତି କର ହୋଇଥାଏ । ସେଇଥିପାଇଁ ମୁନିଋଷିମାନେ କାହାରି ଅନ୍ନ ଖାଇବାକୁ ପସନ୍ଦ କରନ୍ତି ନାହିଁ । ସେମାନେ ପକ୍ଷୀମାନଙ୍କ ପରି ଦାନାଗୁଡ଼ିକ ଖୁଣ୍ଟି ଆଣି ଜୀବନ ଧାରଣ କରିବାକୁ ଶ୍ରେୟସ୍କର ମନେ କରନ୍ତି । ଅବଶ୍ୟ ଆଜିକାଲିର ଲୋକେ ସେଭଳି ସାଧୁମାନଙ୍କୁ ପାଗଳ ବୋଲି କହିବେ । ସେମାନଙ୍କ ମତରେ ଅନ୍ନସଂସ୍ଥାନ ପାଇଁ ଯେତେ ସମୟ ଏମାନେ ନଷ୍ଟ କରୁଛନ୍ତି, ସେତିକ ସମୟ ପୁସ୍ତକ ରଚନା କିମ୍ବା ପିଲାମାନଙ୍କୁ ଶିକ୍ଷା ଦେବାରେ ବିତାଇଲେ, ସେମାନଙ୍କ ଅନ୍ନ ସଂସ୍ଥାନ ସୁଗମ ହୋଇ ପାରନ୍ତା ! କିନ୍ତୁ ସେମାନଙ୍କ ଧାରଣା ଭୁଲ୍ । ସେମାନେ ଭୌତିକ ବାହ୍ୟ କର୍ମ ଉପରେ ଗୁରୁତ୍ୱ ଦେଉଛନ୍ତି । ସେଇଥିପାଇଁ ଆଜିର ଲେଖକମାନେ ପୁସ୍ତକ ବିକ୍ରୟ କରି ଟଙ୍କା ରୋଜଗାରର ଫନ୍ଦା ଫିକର ଚଳାଇଛନ୍ତି । ପରମାଣୁ ବମ୍ ଆବିଷ୍କାରକଙ୍କୁ ଯେ କୌଣସି ସରକାର ପ୍ରଚୁର ଧନବ୍ୟୟରେ କ୍ରୟ କରି ନେଉଛନ୍ତି । କିନ୍ତୁ ଆମ ସଂସ୍କୃତିରେ ବାଣିଜ୍ୟ କରୁଥିବା ଲୋକ ହାତରୁ ଜଳ ଗ୍ରହଣ କରିବା ପାପ ବୋଲି ଗ୍ରହଣ କରାଯାଏ । ରାଜାଙ୍କ ଦାନରେ ମିଳୁଥିବା ଅନ୍ନକୁ ମଧ୍ୟ ଦୂଷିତ ଅନ୍ନ ବୋଲି କୁହାଯାଉଥିଲା । ସଂଗ୍ରହ କରି ଜୀବନଯାପନ କରୁଥିବା ସନ୍ନ୍ୟାସୀଙ୍କୁ ରାଜା ସୁବର୍ଣ୍ଣ ଦାନ କରିବାକୁ ଇଚ୍ଛା କରି, ଫଳ ମଧ୍ୟରେ ସୁନା ରଖି ଦେବାକୁ ଚାହିଁଲେ । କିନ୍ତୁ ତଥାପି ନିର୍ଲୋଭ ବିପ୍ର ତାହାକୁ ଗ୍ରହଣ କଲେ ନାହିଁ ।

ମୁଁ ଜାଣିଛି, ବହି ଲେଖି, ଛପାଇ ତାକୁ ବଜାରରେ ଲୋକମାନଙ୍କୁ ବିକ୍ରୟ କରିବା ଅବଶ୍ୟ ବଣିକ ବୃତ୍ତି । ଏହା ଫଳରେ ମନରେ ବ୍ୟାପାରୀ ମନୋବୃତ୍ତି ଜାତ ହୁଏ ଏବଂ ଚିତ୍ତବୃତ୍ତି କଳୁଷିତ ହୁଏ, ମନକୁ ଊର୍ଦ୍ଧ୍ୱ ଆଡ଼କୁ ନ ଦେଇ ଅଧୋଗତି ଆଡ଼କୁ ଟାଣିଓଟାରି ନେଇଯାଏ । ଏହି ବ୍ୟାପାର ଫଳରେ ମୋର ଭଜନ ପୂଜନ ଓ ସାଧନାରେ ଅନେକ ବିଘ୍ନ ଉପସ୍ଥିତ ହୋଇଛି । ଏହା ଫଳରେ ମୋ ଜୀବନର ସମସ୍ତ ନିୟମ ବାଧାପ୍ରାପ୍ତ ହୋଇଛି । ମୁଁ ଏକପ୍ରକାର ଏହି ବନ୍ଧନରେ ବନ୍ଦୀ ହୋଇପଡ଼ିଛି । ଏଥିରୁ ଉଦ୍ଧାର ପାଇବାର ଆଉ କୌଣସି ଉପାୟ ମୋତେ ଦେଖାଯାଉ ନାହିଁ । ଶ୍ରୀନାରାୟଣଙ୍କ ବ୍ୟତୀତ ମୋତେ ଆଉ କେହି ଏ ବିପଦରୁ ଉଦ୍ଧାର କରି ପାରିବେ ନାହିଁ । ସେ ହିଁ ମୋତେ ଏଥିରେ ପୂରାଇଛନ୍ତି ଏବଂ କେବଳ ସେହି ପରମାତ୍ମାହିଁ ସେଥିରୁ ଉଦ୍ଧାର କରିବେ ।

ବ୍ରଜଭୂମିର କଦମ୍ ଖଣ୍ଡିରେ ଜଣେ ମୌନୀ ବାବା ରହୁଥିଲେ । ତାଙ୍କ ଶିରରେ ଲମ୍ବ ଲମ୍ବ ଜଟା ଥିଲା । ଦିନେ ତାଙ୍କ ଜଟା କୌଣସି ଗୋଟିଏ ଲତା ଗହ୍ୱଳରେ ଲଷିଗଲା । ସେ ସେହିଠାରେ ରାତଦିନ ପର୍ଯ୍ୟନ୍ତ ଛିଡ଼ା ହୋଇ ରହିଲେ । ଅନ୍ୟମାନେ ବାବାଙ୍କ ଜଟାକୁ ଲତା ଗହ୍ୱଳରୁ ବାହାର କରି ଦେବାପାଇଁ ଆଗେଇ ଆସିଲେ । ସେ ସେମାନଙ୍କୁ ବାରଣ କରି ଫେରାଇ ଦେଲେ । ମନେ ମନେ ଭାବିଲେ—ଯେ ଲତାରେ ମୋ' ଜଟାକୁ ଲଗାଇଛି, ସେହି ଆସି ବାହାର କରିବ । ଏହା ମନେ ମନେ ଭାବି କାନ୍ଦିବାକୁ ଲାଗିଲେ ।

ଅଭି ଶ୍ୟାମସୁନ୍ଦର ସହି ପାରିଲେ ନାହିଁ । ସେ ଆସି ବାବାଙ୍କ ପାଖରେ ପହଞ୍ଚି କହିଲେ—"ବାବା, ଛିଡ଼ା ହୋଇଛ କାହିଁକି ? ମୁଁ ତୁମ ଜଟାଟିକୁ ଲତାଗହ୍ୱଳରୁ ଖୋଲି ଦେଉଛି ।"

ବାବାଜୀ ମୌନ ଭଙ୍ଗ କରି ପଚାରିଲେ—"ତୁମେ କିଏ ?" ଭଗବାନ୍ ଉତ୍ତର ଦେଇ କହିଲେ—"ମୁଁ ଶ୍ୟାମସୁନ୍ଦର ଶ୍ରୀକୃଷ୍ଣ ।"

ବାବାଜୀ ଟିକିଏ ରୁକ୍ଷ ସ୍ୱରରେ କହିଲେ—"ସତେ ତୁମେ କଣ ସେଇ ଠନ୍ ଠନ୍ ମଦନ ଗୋପାଳ ? ଶ୍ରୀମତୀଙ୍କ ବିନା ଆମେ ତୁମକୁ ଚିହ୍ନିବୁ କିପରି ?"

ତହୁଁ ଶ୍ରୀକୃଷ୍ଣ ରାଧାଙ୍କ କାନ୍ଧରେ ହାତ ପକାଇ ମୌନୀ ବାବାଙ୍କଠାରେ ଆସି ଉପସ୍ଥିତ ହେଲେ ଏବଂ ନିଜ ହାତରେ ବାବାଙ୍କ ଜଟାଜୁଟକୁ ଲତାଗହ୍ୱଳରୁ ଫିଟାଇ ଦେଲେ ।

ହେ ଶ୍ୟାମସୁନ୍ଦର ! ମୌନୀ ବାବାଙ୍କ ପରି ମୋ' ମନ ମଧ୍ୟ ଏଇ ଧନ୍ଦାରେ ଅଟକି ଯାଇଛି । ମୋତେ ଏଥିରୁ ଉଦ୍ଧାର କର ପ୍ରଭୋ ! ଅବଶ୍ୟ ମୌନୀ ବାବାଙ୍କ ପରି ନିଷ୍ଠା, ପ୍ରେମ ଓ ଶ୍ରଦ୍ଧା ମୋ'ଠାରେ ନାହିଁ; ତଥାପି ମୋର ଅନୁରୋଧ, ମୋତେ ଏଥିରୁ ଉଦ୍ଧାର କର । ମୋତେ କେତେକ ଲୋକ 'ମୌନୀ ବାବା' ବୋଲି ଡାକନ୍ତି । ଆପଣ ନାମର ଦମତାରୁ ଅଜାମିଳକୁ ଉଦ୍ଧାର କରିଦେଲେ, ମୋତେ ମଧ୍ୟ ସେହିପରି ନାମ ସାମ୍ୟରୁ, ଉଦ୍ଧାର କରିଦିଅ । ହେ ପ୍ରଭୋ, ମୋ' ଜୀବନର ଅଡୁଆ ଖିଅଟିକୁ ସଜାଡ଼ି ଦେବ ତ ?"

## ଛପ୍ପୟ

କା ତୁମ୍ ତେଁ ଅତି ବଲୀ କାମ ହୈଁ ମୋହନ ପ୍ୟାରେ ।
କା ତୁମତେ ଅତି ମଧୁର ବିଷୟସୁଖ ହୈଁ ରସବାରେ ॥
କା ତବ ଗୁନତେଁ ମଧୁର କାମ କୀ କଥା ମନୋହର ।
କା ତବ ମୁଖତେଁ ସୁଘର ନାରୀ ନରକୋ ମୁଖ ସୁନ୍ଦର ॥
ଯଦି ମାଧୌ ଐସୋ ନହୀ ତୌ ଚୈ କ୍ୟୋ ଚତ ଚଞ୍ଚଲ ବନୈ ।
କ୍ୟୋଂ ନ ତ୍ୟାଗି ଜଗଜାଲ କୂଁ, ତୁମରେଇ ରସ ମେ ସନୈ ॥



ସଙ୍କୀର୍ତ୍ତନ ଭବନ, ପ୍ରତିଷ୍ଠାନପୁର (ପ୍ରୟାଗ) ପ୍ରଭୁଦତ୍ତ

ଜଡ ଗା, ଭୁବନେଶ୍ୱର

# ରାସଲୀଳା ପ୍ରସଙ୍ଗର ପରିସମାପ୍ତି

**ବ୍ରହ୍ମରାତ୍ର ଉପାବୃତ୍ତେ ବାସୁଦେବାନୁମୋଦିତାଃ ।**
**ଅନିଚ୍ଛନ୍ତ୍ୟୋ ଯଯୁର୍ଗୋପ୍ୟଃ ସ୍ୱଗୃହାନ୍ ଭଗବତ୍ ପ୍ରିୟାଃ ॥**

( ଭାଗବତ ୧୦ସ୍କ, ୩୩ଅ, ୩୩ଶ୍ଳୋକ )

## ଛପ୍‌ପୟ

ଯୋ ବୃନ୍ଦାବନ ମାଁହୀଁ ରାସ ଅତି ରସମୟ କୀୟୋ ।
ଧରି ନରବପୁ ଅତି ସୁଧର ପରମସୁଖ ଗୋପିନ ଦୀୟୋ ॥
ରାସକୀ ସର୍ବଦା ସୁଖଦ ଶ୍ୟାମନେ ସତତ ବଢ଼ାଈ ।
ଲୀଲ ଜୋ ଗୋଲୋକ ହୋହି ସୋ ଅବନି ଦଖାଈ ॥
ଜୟ ଜୟ କ୍ରୀଡ଼ା କାମକୀ, ଜୟ କୃତାରଥ କାମିନୀ ।
ହୋହିଁ ସୁମିରି ସବ ସୁଖୀ ନର, ଲୀଲା ଅତି ମନ ଭାଓ୍ୱନୀ ॥

ଶ୍ରୀଶୁକଦେବ କହୁଛନ୍ତି — ହେ ମହାରାଜ ପରୀକ୍ଷିତ, ବ୍ରାହ୍ମମୁହୂର୍ତ୍ତ ହୋଇ ଯାଆନ୍ତେ, ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଜ୍ଞା ପାଇ ଗୋପିକାଗଣ ଇଚ୍ଛା ନଥିଲେ ମଧ୍ୟ ନିଜ ନିଜ ଗୃହକୁ ଫେରିଗଲେ ।

ସଂସାରରେ ଯାହାର ଆଦି ଅଛି, ତାହାର ଅନ୍ତ ନିଶ୍ଚୟ ରହିଛି । ବୃକ୍ଷରେ ପତ୍ର ଓ ଫଳ ଉତ୍ପନ୍ନ ହୋଇ ଝଡ଼ିଯାଆନ୍ତି, ମିଳନ ହୁଏ ବିୟୋଗ ପାଇଁ ଏବଂ ସୃଷ୍ଟିର ଚରମ ଲକ୍ଷ୍ୟ ହେଉଛି – ସଂହାର, ଏଇଥିପାଇଁ ଭଗବାନଙ୍କୁ ଅନନ୍ତ କୁହାଯାଉଛି । ତାଙ୍କର ଆଦି ନାହିଁ କିମ୍ବା ଅନ୍ତ ନାହିଁ । ସେ ଯେପରି ଅନନ୍ତ, ତାଙ୍କ ଲୀଳା ମଧ୍ୟ ଅନନ୍ତ । ସେ ଲୀଳା ଅନାଦିକାଳରୁ ହୋଇ ଆସୁଛି ଏବଂ ପ୍ରତି ମୁହୂର୍ତ୍ତରେ ତାହା ରସାଣିତ ହୋଇ ଉଠୁଛି । ପ୍ରସଙ୍ଗଟି ଆରମ୍ଭ ହୋଇଥିବାରୁ, ତା'ର ପରିସମାପ୍ତି ନିଶ୍ଚୟ ହେବ । କିନ୍ତୁ ପରମାତ୍ମାଙ୍କ ଲୀଳାର ପରିସମାପ୍ତି ନାହିଁ । ରାସ ରୂପକ ରସାୟନ କେବଳ ଆସ୍ୱାଦନର ବିଷୟ । ଏହାର ସେବନ ଫଳରେ ଅନ୍ତଃକରଣରେ ଅସ୍ତବ ରୂପକ ଯେଉଁ ରୋଗ ରହିଛି, ତା'ର ପରିସମାପ୍ତି ଘଟିବ । ଆରୋଗ ହୋଇଗଲେ ସ୍ୱାସ୍ଥ୍ୟର ଉନ୍ନତି ନିଶ୍ଚୟ ଘଟିବ ଏବଂ ତା'ଫଳରେ ନିଦ୍ରା ମଧ୍ୟ ଖୁବ୍ ହେବ । ଏହି ଦିବ୍ୟ ନିଦ୍ରା ଫଳରେ ରୋଗ କଥା ପସୁରେ

କଏ, ମୁଖ୍ୟ ମଧ୍ୟ ପାଖ ମାଡ଼ିବ ନାହିଁ । ରାସ ପ୍ରସଙ୍ଗ ଗୋଟିଏ ବା ଦୁଇଟିକି ଶୁଣିବାର ବିଷୟ ନୁହେଁ, ତାହା ନିଃଶ୍ୱାସ ପ୍ରଶ୍ୱାସ ପରି ସର୍ବଦା ଶରୀରର ଅନ୍ତରଙ୍ଗ ହୋଇ ରହିଛି ।

ସୂତ କହିଲେ—"ହେ ମୁନିଗଣ, ରାସ ବିଷୟରେ ମୁଁ ଆଉ ଅଧିକ ବର୍ଣ୍ଣନା କରି ପାରିବି ନାହିଁ । ଗୋପୀମାନେ ଶ୍ୟାମସୁନ୍ଦରଙ୍କ ସୁଖଦ ସ୍ପର୍ଶ ପାଇ କିପରି ଭାବରେ ପ୍ରମୁଦିତ ହୋଇଥିଲେ, ତାହା ଅବର୍ଣ୍ଣନୀୟ । ଯେଉଁ ସୌଭାଗ୍ୟଶାଳୀ ବ୍ୟକ୍ତିଗଣ ରାସଲୀଳା ସନ୍ଦର୍ଶନର ସୁଯୋଗ ପାଇଛନ୍ତି, ସେମାନେ କୃତାର୍ଥ ହୋଇଯାଇଛନ୍ତି । ସେହି ଲୀଳାର ସନ୍ଦର୍ଶନରେ ପାଷାଣ ତରଳି ଯାଇଛି ଏବଂ ବୃକ୍ଷମାନେ ରୋମାଞ୍ଚିତ ହୋଇଛନ୍ତି । ସେହି ଅମୃତ ଲୀଳାର ପ୍ରଭାବରେ ଦେବାଙ୍ଗନାଗଣ ସରସତାରେ ନିମଗ୍ନ ହୋଇଯାଇଛନ୍ତି । ସେମାନେ କେଶ, ବାସ ତଥା ନିଜର ପ୍ରସାଧନ ଓ ଅଳଙ୍କାର ଆଦି ପାସୋରି ଦେଇ, ଏକାଗ୍ରତାର ସହିତ ସେହି ଲୀଳା ପ୍ରତ୍ୟକ୍ଷ କରିଛନ୍ତି । ଜଗତର ଅଲୋକଦାତା ଚନ୍ଦ୍ର ନିଜର ଗତିପଥ ରୁଦ୍ଧ କରି ଛଅମାସ ପର୍ଯ୍ୟନ୍ତ ବ୍ରଜଭୂମିକୁ ଆଲୋକିତ କରିଛନ୍ତି । ଶ୍ରୀକୃଷ୍ଣଙ୍କର ଅପାର କରୁଣା ବଳରେ ବ୍ରଜମଣ୍ଡଳରେ ରାସରସ ପ୍ଲାବିତ ହୋଇ ପ୍ରତ୍ୟେକ ଜୀବକୁ ସେଥି ମଧ୍ୟରେ ନିମଜ୍ଜିତ କରାଇଛି । ବ୍ରଜାଙ୍ଗନାମାନେ ସେହି ରସରେ ଘରଦ୍ୱାର, ପୁତ୍ର, କୁଟୁମ୍ବ, ଧନ, ପତି ତଥା ସାଂସାରିକ ସମସ୍ତ ବନ୍ଧନକୁ ପାସୋରି ଦେଇ ସେହି ରସସାଗରରେ ବୁଡ଼ି ଆତ୍ମହରା ହୋଇ ପଡ଼ିଛନ୍ତି ।"

ପ୍ରେମର ପରିତୃପ୍ତି ନାହିଁ । ବ୍ରଜନାଗରୀ ଆପାତତଃ ପରିତୃପ୍ତା ହୋଇଥିଲେ ମଧ୍ୟ ରାସରସିକଙ୍କ ସଙ୍ଗସୁଖ ଛାଡ଼ିବାକୁ ସେମାନେ ଆଦୌ ପ୍ରସ୍ତୁତ ନ ଥିଲେ । କାରଣ ପ୍ରେମର ମୂଳମନ୍ତ୍ର ହେଉଛି—ଆଧିକ୍ୟରେ ହିଁ ପିପାସାର ଅଭିବୃଦ୍ଧି । ତଥାପି ନଟନାଗରଙ୍କୁ ରାସଲୀଳାର ପରିସମାପ୍ତି ଘଟାଇବାକୁ ପଡ଼ିଲା ।

ହଠାତ୍ ପ୍ରାଚୀଗଗନ ଅରୁଣରାଗରେ ଉଦ୍‌ଭାସିତ ହୋଇ ଉଠିବାରୁ, ରାସରସିକ ଚମକି ପଡ଼ିଲା ପରି କହିଲେ—"ହେ ବ୍ରଜନାଗରୀଗଣ, ତତକ୍ଷଣେ ଦେଖ, ସକାଳ ହୋଇ ଗଲାଣି । ଏଥର ତୁମେମାନେ ନିଜ ନିଜ ଘରକୁ ବାହୁଡ଼ି ଯାଅ ।"

ଅଧୀରା ହୋଇ ଗୋପୀକାମାନେ କହିଲେ—"ହେ ନଟନାଗର, ଆମେ ଯିବୁ କୁଆଡ଼େ ? ବାତୁଳତାରେ ଆମେ ତୁମର କଣ୍ଠତଟ ମଣ୍ଡନ କରିବା ସଙ୍ଗେ ସଙ୍ଗେ ତୁମକୁ ବରଣ କରିସାରିଛୁ । ଆମେ ବନମାଳୀଙ୍କୁ ତ୍ୟାଗ କରି ଆଉ କୁଆଡ଼େ ଯାଇପାରିବୁ ନାହିଁ । ତୁମ ସହିତ ଆମେ ଏହି ବନଗହନ ମଧ୍ୟରେ ଚିରକାଳ ଭ୍ରମଣ କରି, ଜୀବନକୁ ଧନ୍ୟ ମନେ କରିବୁ ।"

"ହେ ରାସରସିକ, ଆମର ଘରଦ୍ୱାର ସବୁକିଛି ତୁମର ଚରଣତଳେ ରହିଛି । ତୁମ ବିନୁ ଦିବ୍ୟପୁର ମଧ୍ୟ ଆମ ପକ୍ଷରେ ନିଦଗ୍ଧ ତଥା ଭୟାବହ ବନ । ତୁମେ 'ଯାଅ' 'ଯାଅ' ବୋଲି ବାରମ୍ବାର କହୁଛ, ଆମେ ଯିବୁ କୁଆଡ଼େ ? ତୁମକୁ ଛାଡ଼ି ଆମେ ବଞ୍ଚିବୁ କିପରି ?

ଶ୍ୟାମସୁନ୍ଦର ଏଥର ଚତୁରତାର ସହିତ ଆଉ ଗୋଟିଏ ଜାଲ ବିସ୍ତାରି କହିଲେ—"ହେ ବ୍ରଜସୁନ୍ଦରୀଗଣ, ତୁମେ କ'ଣ ଜାଣିଛ ଯେ, ସଂଯୋଗ ଅପେକ୍ଷା ବିୟୋଗରେ ଅଧିକ ସୁଖ-ଲାଭ ହୋଇଥାଏ । ଯେ କୌଣସି ସୁନ୍ଦର ବନ-ଉପବନ ତଥା ମଧୁମୟ ଉଦ୍ୟାନକୁ ଦେଖିବା ସମୟରେ ମନରେ ଯେଉଁ ଆନନ୍ଦ ଜାତ ହୋଇଥାଏ, ତା'ଠାରୁ ଅଧିକ ସୁଖ ମିଳିଥାଏ—ତା'ର ସ୍ମୃତି ସ୍ମରଣରେ । ପ୍ରେମିକର ସ୍ନେହାଲିଙ୍ଗନରେ ଯେଉଁ ସୁଖ ଜାତ ହୋଇଥାଏ, ତାହା କ୍ଷଣିକ; କିନ୍ତୁ ତା'ର ମଧୁର ସ୍ମୃତି ଯୋଗୁ ମନ ମଧ୍ୟରେ ଆନନ୍ଦର ହିଲ୍ଲୋଳ ଖେଳିଯାଏ । ତୁମ ଆମର ଯେଉଁ ମଧୁର ମିଳନ ହେଲା—ତା'ର ସୁଖଦ ସ୍ମୃତି ହିଁ ଆମର ଗଚ୍ଛିତ ଧନ ହୋଇ ରହିବ । ତାକୁ ହିଁ ମନର ନନ୍ଦନ କାନନ ମଧ୍ୟରେ ସାଇତି ରଖି ଆମେ ଚିରକାଳ ଆନନ୍ଦରେ ମଗ୍ନ ହେଉଥିବା । ପ୍ରେମମାର୍ଗରେ ସର୍ବଦା ସୁଖପ୍ରାପ୍ତି ହୋଇଥାଏ । ସେଠାରେ ଦୁଃଖ ହିଁ ସୁଖରେ ପରିଣତ ହୁଏ । ସେଠାରେ ଅଶ୍ରୁର ସ୍ୱର ମଧ୍ୟ ମଧୁର । ପ୍ରେମର ଅଶ୍ରୁ ଜୀବନରେ ଶୀତଳ ପ୍ରଲେପ ବୋଳିଦିଏ । ଯାଅ, ଆଉ ବିଳମ୍ବ କରନାହିଁ ।"

ଗୋପିକାମାନେ ଶିରନତ କରି ଚିନ୍ତାକଲେ—"ପୁରୁଷଙ୍କ ହୃଦୟ କୁଳିଶଠାରୁ ମଧ୍ୟ କଠିନ । ଆମେ ରହିବାକୁ ଚାହୁଁ; କିନ୍ତୁ ସେ ଦୂରେଇ ଦେବାପାଇଁ ବ୍ୟାକୁଳ । ଆମେମାନେ ଅବଳା, ପୁରୁଷର ଇଚ୍ଛା ହିଁ ଆମର ପାଥେୟ । ଯାହା ସେ କହିବେ, ଆମକୁ ତାହାହିଁ କରିବାକୁ ପଡ଼ିବ ।"

ଏହା ଚିନ୍ତା କରି ଗୋପିକାମାନେ ନିଜର ଅନିଚ୍ଛାସତ୍ତ୍ୱେ ଗୋପପୁରକୁ ବାହୁଡ଼ିଗଲେ ।

ସୂତମୁନି କହିଲେ—"ହେ ଋଷିଗଣ, ଏଠାରୁ ରାସଲୀଳା ସମ୍ପୂର୍ଣ୍ଣ ହୋଇଗଲା । ଏହି ଲୀଳା-ବର୍ଣ୍ଣନ ଯେଉଁମାନେ ଶ୍ରଦ୍ଧାପୂର୍ବକ ଶ୍ରବଣ କରିବେ, ସେମାନଙ୍କ ହୃଦୟରୁ କାମନା ଦୂରୀଭୂତ ହୋଇଯିବ । ସେମାନେ କାମରୋଗରୁ ନିସ୍ତାର ଲାଭ କରି ସୁସ୍ଥ ହୋଇଯିବେ ।"

ଏହାଶୁଣି ଶୌନକ ପଚାରିଲେ—"ହେ ମୁନିବର, ଆପଣ କାମକୁ ହୃଦୟର ରୋଗ ବୋଲି କହୁଛନ୍ତି କାହିଁକି ?"

ସୂତମୁନି କହିଲେ—"ହେ ଶୌନକ, ରୋଗ ହେଉଛି—ବାତ, ପିତ୍ତ ଓ କଫ ଦୋଷର ସମଷ୍ଟି । ଏହି ତ୍ରିଦୋଷର ଆଧିକ୍ୟରେ ଶରୀର ଶିଥିଳ ହୋଇଯାଏ । ସେହି ରୋଗ ଅଧିକ୍ୟରେ ଜିହ୍ୱା ଲାଳସା ବୃଦ୍ଧି ପାଏ । ବିବେକ ବାଧା ଦେଲେ ମଧ୍ୟ ସେ ତାହା ପାଳନ ନ କରି, ଅରୁଚିଏ ମାଗି ପାଇବାର କାମନା କରେ । ଶାରୀରିକ ରୋଗ ପୂର୍ବଜନ୍ମର ପାପ ତଥା କୁପଥ୍ୟ ଫଳରେ ଜାତ ହୋଇଥାଏ ଓ ଅଧିକ କୁପଥ୍ୟ ଫଳରେ ତା'ର

ଅଭିବୃଦ୍ଧି ହୁଏ । ବାତ, ପିତ୍ତ, କଫ ଆଦି ତ୍ରିଦୋଷର ସମ୍ମିଶ୍ରଣରେ ଶରୀରରେ ରୋଗ ଜାତ ହେଲା ପରି, ହୃଦୟକୁ କାମ ରୋଗ ଗ୍ରାସ କରିଥାଏ । ଏହି କାମ ଭାବ ହୃଦୟରେ ସ୍ୱାଭାବିକ ଭାବରେ ଜାତ ହୋଇଥାଏ । ସଞ୍ଜମ, ସଦାଚାର, ସାତ୍ତ୍ୱିକତାରେ ଏ ରୋଗ ଅସ୍ଥାୟୀ ଭାବେ ଉପଶମ ହେଲାପରି ମନେହୁଏ; କିନ୍ତୁ ସେ ରୋଗ ହୃଦୟରୁ କେବେହେଲେ ବିଦୂରିତ ହୁଏ ନାହିଁ । ଅନୁକୂଳ ପରିସ୍ଥିତି ଉପସ୍ଥିତ ହେଲେ, ତାହା ପୁଣି ହୃଦୟକୁ ଆକ୍ରାନ୍ତ କରିଥାଏ । ଏହି କାମ ବ୍ୟାଧି ହୃଦୟରେ ପ୍ରବଳ ହେଲେ ବିବେକ ନଷ୍ଟ ହୋଇଯାଏ ଏବଂ ମନୁଷ୍ୟର ସକଳ ପ୍ରକାର ଶୁଭପ୍ରବୃତ୍ତି ପାଣି ଫୋଟକା ପରି ମିଳାଇ ଯାଏ । ମନୁଷ୍ୟ କାମାଧୀନ ହୋଇଯାଇ, ଅକର୍ମକୁ ସୁକର୍ମ ବୋଲି ଆଦର କରେ । ଏହାର ଏକମାତ୍ର ଔଷଧ – ଭଗବଦ୍ ଚିନ୍ତାରେ ମନକୁ ନିମଗ୍ନ କରାଇବା । ଗୋପିକାମାନଙ୍କର ପ୍ରେମଲୀଳାରେ ମନ ନିମଜ୍ଜିତ ହୋଇଗଲେ, ମନରେ ଏହି ନଶ୍ୱର ଶରୀର ପ୍ରତି ଘୃଣା ଜାତ ହୁଏ । ଯାହା ମନରେ କାମବାସନା ଅଧିକ ତୀବ୍ର ହୋଇଯାଏ, ସେ ଭଗବଦ୍ ଲୀଳାରେ ମନଲଗାଇ ପାରେ ନାହିଁ । ଯେପରି ପିତ୍ତାଧିକ୍ୟ ରୋଗୀକୁ ମିଶ୍ରି ମଧ୍ୟ ପିତା ଲାଗେ; କିନ୍ତୁ ଏହି କାମବ୍ୟାଧିର ଏକମାତ୍ର ସର୍ବାଧିକ ତଥା ସଫଳ ଔଷଧ ହେଉଛି— ଭଗବଦ୍ ସ୍ମରଣ ଏବଂ ଭଗବତ୍ ଲୀଳା କୀର୍ତ୍ତନ । ଏହି ଚିନ୍ତନ ଓ ମନନ ଫଳରେ ସେଥିପ୍ରତି ଆସକ୍ତି ଜାତ ହୋଇଥାଏ । ତା' ଫଳରେ ହୃଦୟରୁ କାମବ୍ୟାଧି ଦୂର ହୋଇଯାଏ ।

"ହେ ମୁନିଗଣ, ଦିବ୍ୟକାମର ପ୍ରଭାବ ଫଳରେ ପ୍ରାକୃତ କାମ ହୃଦୟରୁ ସମୂଳେ ବିନଷ୍ଟ ହୋଇଥାଏ । ଏହାହିଁ ହେଉଛି ରାସଲୀଳାର ପ୍ରଧାନ ମାହାତ୍ମ୍ୟ । ଏହାପରେ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି, କୁହନ୍ତୁ ।

ଶୌନକ ମୁନି କରଯୋଡ଼ି କହିଲେ—"ହେ ସୂତ ମୁନିବର, ଆପଣ ଦୀର୍ଘଜୀବୀ ହୁଅନ୍ତୁ । ହେ ମହାଭାଗ, ଆପଣ ରସମୟୀ ରାସଲୀଳା ଆମ ଆଗରେ ବର୍ଣ୍ଣନା କରି ଆମକୁ କୃତକୃତ୍ୟ କରିଛନ୍ତି । ଏହାପରେ ପରମେଶ୍ୱର ଯେଉଁ ଯେଉଁ ଲୀଳା ପ୍ରକଟ କରିଛନ୍ତି, ଆପଣ ସେହି ଲୀଳାଗୁଡ଼ିକ ପର୍ଯ୍ୟାୟକ୍ରମେ ବ୍ୟାଖ୍ୟା କରନ୍ତୁ । କାରଣ ସାଂସାରିକ କଥା ଶ୍ରବଣରେ କେବଳ ବ୍ୟର୍ଥରେ ଆୟୁନଷ୍ଟ ହୋଇଥାଏ । ତେଣୁ ଏକମାତ୍ର ସ୍ମରଣୀୟ ବିଷୟ ହେଉଛି—କୃଷ୍ଣ କଥା । ଯେଉଁଦିନ ଆମକୁ କୃଷ୍ଣଗାଥା ଶୁଣିବାକୁ ମିଳେ ନାହିଁ, ସେ ଦିନଟି ଆମର ବ୍ୟର୍ଥରେ ନଷ୍ଟ ହୋଇଗଲା ବୋଲି ଆମର ଧାରଣା ହେଉଛି ।

ଶୌନକଙ୍କ ବିନୟ ପୂର୍ଣ୍ଣ ତଥା ଶ୍ରଦ୍ଧାଯୁକ୍ତ ବାଣୀ ଶୁଣି କହିଲେ ସୂତ ମହୋଦୟ— "ହେ ମୁନିବର ! ମୁଁ ଆପଣମାନଙ୍କ ଆଗ୍ରହପୂର୍ଣ୍ଣ ବାଣୀ ଶୁଣି ଖୁସି ହେଲି । ତେଣୁ ଶ୍ରୀକୃଷ୍ଣଙ୍କର ଅନ୍ୟ ଲୀଳାମାନ ମୁଁ ଆପଣମାନଙ୍କ ଆଗରେ କ୍ରମରେ ବ୍ୟାଖ୍ୟା କରିବି ।"

### ଛପ୍‌ପୟ

ଜନ ଜନ ଘର ପୁନ ପ୍ରୀତ ହୋ'ତ ଅଇଁ ବ୍ରଜନାରୀ ।
ତ୍ୟୌ ନତ କ୍ରୀଡ଼ା କରେଂ କୃଷ୍ଣ ପ୍ୟାରୀ ସୁଖକାରୀ ॥
ଜୋ ନର ଶ୍ରଦ୍ଧା ସହିତ ସରଲୀଳ କୂଁ ଗାଓଁ ।
ପଢେଁ ସୁନେଁ ସୁଖ ଲହେଁ ଅନ୍ତମହଁ ପ୍ରଭୁପଦ ପାଓଁ ॥
ବାର ବାର କେ ପ୍ରେମତେଁ, ଗଦ୍ୟ ପଦ୍ୟ ମହଁ ଗ ଯୁଁ ଗେ ।
ଜନ୍‌କେ ହିୟକେ ରୋଗ ସବ, କାମ କ୍ରୋଧ ନସି ଜାୟଁଗେ ॥



## ଅମ୍ବିକା ବନଯାତ୍ରା

"ଏକଦା ଦେବଯାତ୍ରାୟାଂ ଗୋପାଲା ଜାତକୌତୁକାଃ ।
ଅନୋଭିରନଡୁଦ୍ ଯୁକ୍ତୈଃ ପ୍ରୟଯୁସ୍ତେଽମ୍ବିକାବନମ୍" ॥

(ଭା ୧୦ସ୍କ । ୩୪ଅ । ୧ଶ୍ଳୋ)

### ଛପ୍‌ପୟ

"ଅବ୍ ଆଗେ କୀ କଥା ଅମ୍ବିକା ବନ କୀ ମୁନିବର !
ସୁନୋ କରେ୍ୟା ଜୋ ଖେଲ ତହଁ । ନନ୍ଦନନ୍ଦନ ନଟବର ॥
ଏକ ସମୟ କୀ ବାତ ଅମ୍ବିକା ଶିବ ପୂଜନ ହିତ ।
ଗୟେ ଗୋପ ଚଢ଼ି ଶକଟ କରୀ ପୂଜାତହଁ ବିଧିବତ ॥
ତଟ ସରସ୍ୱତୀ କେ ବସେ, କଈ କେବଲ୍ ଜଲ୍‌ପାନ ସବ ।
ଆୟୌ ଅଜଗର ଦୈବବଶ, ସୋଓୟେ ସୁଖତେଁ ନନ୍ଦଜବ ॥"

ଶୁକଦେବ କହିଲେ—"ହେ ରାଜନ୍ ଉକ୍ତକର ଘଟଣା, ଗୋପାଳ ଓ ଗୋପୀମାନେ ଶଗଡ଼ରେ ବସି ଅମ୍ବିକା ପୂଜା ପାଇଁ ଅମ୍ବିକା ବନକୁ ଯାତ୍ରା କରିଥିଲେ ।"

ପ୍ରତ୍ୟେକ ପ୍ରାଣୀ ସଦାସର୍ବଦା ପରିବର୍ତ୍ତନ ଚାହାଁନ୍ତି; କିନ୍ତୁ ପଶୁ ପରାଧୀନ ହୋଇ ପରିବର୍ତ୍ତନ ଖୋଜିଲେ ମଧ୍ୟ ପାଇପାରେ ନାହିଁ ଏବଂ ବ୍ରହ୍ମଜ୍ଞାନୀ ପରମେଶ୍ୱରଙ୍କ ଚିନ୍ତାରେ

ନିମଗ୍ନ ରହିବା ଫଳରେ ପରିବର୍ତ୍ତନର ସ୍ୱାଦ ବୁଝିବା ପାଇଁ ଅବସର ପାଇପାରନ୍ତି ନାହିଁ । ନୋହିଲେ ପ୍ରତ୍ୟେକ ପ୍ରାଣୀ ଖାଦ୍ୟପେୟ, ବେଶଭୂଷା, ଚାଲିଚଳନ ତଥା ଆଚାର ବ୍ୟବହାରରେ ନିତ୍ୟ ନୂତନ ପରିବର୍ତ୍ତନ ଚାହିଁଥାନ୍ତି ।

ମନୁଷ୍ୟ ସର୍ବଦା ପରିବର୍ତ୍ତନ ଚାହେଁ । ନୂତନ ଜ୍ଞାନଲାଭ, ନୂଆ ନୂଆ ବନ୍ଧୁଙ୍କ ସହିତ ମିଳନ ତଥା ନୂତନ ଅନୁଭୂତି ସହିତ ପରିଚୟ ପ୍ରାପ୍ତ କରିବାକୁ ସମସ୍ତେ ଭଲ ପାଆନ୍ତି ।

ନୂତନ ସ୍ଥାନକୁ ଯାତ୍ରା କରି ନୂଆ ନୂଆ ଅନୁଭୂତି ଅର୍ଜନ କରିବା ଲାଗି ପ୍ରତ୍ୟେକ ମନୁଷ୍ୟର ମନରେ ଆକାଂକ୍ଷା ଜାତ ହୋଇଥାଏ । ନୂଆ ନୂଆ ସ୍ଥାନର ପରିଦର୍ଶନ ଫଳରେ ନୂତନ ଦୃଶ୍ୟ, ନାନାପ୍ରକାରର ଜୀବଜନ୍ତୁ, ଛୋଟବଡ଼ ନଦୀ ନାଳ, ପର୍ବତଗିରି ତଥା ପବିତ୍ରତମ ତୀର୍ଥ ଓ କ୍ଷେତ୍ର ଦେଖିବାକୁ ମିଳିଥାଏ । ଯା' ଫଳରେ ଅନେକ ନୂତନ ଧାରଣା ମନ ମଧ୍ୟରେ ସୃଷ୍ଟି ହୋଇଥାଏ ।

ଯାତ୍ରା ସମୟରେ ସମଧର୍ମୀ ସହଚର ସଙ୍ଗରେ ଥିଲେ, ଯାତ୍ରା ସୁଖକର ହୁଏ । ବାଟ ଚାଲି ଚାଲି ଥକି ପଡ଼ିଲେ, କେଉଁ ବୃକ୍ଷର ସଘନ ଛାୟାତଳେ ଆଶ୍ରୟ ନେଇ ମନକୁ ପୁଣି ସତେଜ କରାଯାଏ ଏବଂ କ୍ଷୁଧାବୋଧ ହେଲେ, ଯେଉଁଠି ଯାହା ମିଳେ, ତାକୁ ହିଁ ଭୋଜନ କରି, ମଣିଷ ଆନନ୍ଦ ଅନୁଭବ କରିଥାଏ ।

ଅବଶ୍ୟ ନୂତନ ସ୍ଥାନକୁ ଯାତ୍ରା କରିବାରେ ବୃଦ୍ଧମାନେ ପଛଘୁଞ୍ଚା ଦେବା ନିତାନ୍ତ ସ୍ୱାଭାବିକ, କିନ୍ତୁ ତୀର୍ଥଯାତ୍ରାରେ ବାହାରିବାବେଳେ ସେମାନେ ଅତ୍ୟୁତ୍ସାହରେ ଆଗଭର ହୋଇଥାନ୍ତି ।

କିନ୍ତୁ ନୂତନସ୍ଥାନର ପରିଦର୍ଶନ ପାଇଁ ଯୁବକମାନେ ଆଗଭର ହୋଇ ବାହାରି ପଡ଼ନ୍ତି । ଯୁବକ-ଯୁବତୀ ଏକତ୍ର ସମାବେଶରେ ଯାତ୍ରା ଅଧିକ ସୁଖମୟ ହୋଇଥାଏ । ଯେ କୌଣସି ପରିସ୍ଥିତିରେ ଯୁବତୀ ମାନେ ବେଶ୍ ଉତ୍ସାହର ସହିତ ଯାତ୍ରାପାଇଁ ଗଣ୍ଠିଲି ପୋଟଳି ସଜାଇ ରଖନ୍ତି । ସ୍ତ୍ରୀମାନଙ୍କ ଅପେକ୍ଷା ଛୋଟ ଛୋଟ ପିଲାମାନେ ନୂଆ ନୂଆ ସ୍ଥାନକୁ ଯିବାପାଇଁ ଆଗଭର ହୋଇଥାଆନ୍ତି । ସେମାନେ ଯାତ୍ରାର ନାମ ଶୁଣିବା ମାତ୍ରେ ନାଚିକୁଦି ଘର ଫଟାଇ ଦିଅନ୍ତି ଏବଂ ସେହି ଆନନ୍ଦରେ ସେମାନଙ୍କ ଆଖିକୁ ନିଦ ମାଡ଼େ ନାହିଁ । ଅନ୍ୟାନ୍ୟ ଯାତ୍ରା ମଧ୍ୟରେ ତୀର୍ଥଯାତ୍ରା ଧର୍ମପ୍ରାଣ ବୃଦ୍ଧମାନଙ୍କ ମନରେ ଅଧିକ ଉତ୍ସାହ ଜାତ କରାଇଥାଏ ।

ସୂତମୁନି ମୂଳ ପ୍ରସଙ୍ଗ ଆଣି କହିଲେ—"ହେ ମୁନିଗଣ, ଭଗବାନଙ୍କର ନାମବିଜୟ ଉପାଖ୍ୟାନ ମୁଁ ଆପଣମାନଙ୍କୁ ଅନେକଥର ଶୁଣାଇଛି । ନାମଦେବ ଘଟଣା କ୍ରମରେ କେତେକ ସ୍ଥଳରେ ଅଶାନ୍ତ ସଙ୍କଳତା ଲକ୍ଷ କରିଥାଆନ୍ତି, ଅଧମାଙ୍କ ହୋଇ ଉଠିଲ ।

ସେ ମନେ ମନେ ଭାବିଲା—ମୁଁ ମୋହନମନ୍ତ୍ର ବଳରେ ସମସ୍ତଙ୍କୁ ପରାଜିତ କରି ଦେଇ ପାରିବି । ବିଶ୍ୱାମିତ୍ର ଆଦି ମୁନିମାନଙ୍କୁ ପରାଜିତ କରିବା ପରେ, ତା'ମନରେ ଏ ପ୍ରକାର ଅଭିମାନ ଜାତ ହୋଇଥିଲା; କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣ ରାସଲୀଳାର ଅବତାରଣା କରି କନ୍ଦର୍ପର ଦର୍ପ ଦଳନ କରିବାରେ ସକ୍ଷମ ହୋଇଥିଲେ । କାମଦେବ ପରାସ୍ତ ହୋଇ ପରଶେଷରେ ଶ୍ରୀକୃଷ୍ଣଙ୍କ ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । କାମଦେବର ବିଷ ଦୃଷ୍ଟିରେ ଯେ ଥରେ ପଡ଼େ, ସେ ଜୀବନରେ ବହୁ କଷ୍ଟ ଅନୁଭବ କରେ । ତା'ର ବାଣଗୁଡ଼ିକ ଭୂଷ୍ଟରେ ପ୍ରସ୍ତୁତ ହୋଇଥାଏ ସତ; କିନ୍ତୁ ତାହା ଜୀବକୁ ଅନେକ କଷ୍ଟ ଦେଇଥାଏ । ଯାହାଙ୍କ ଉପରେ ପୁଷ୍ପବାଣ ପତିତ ହୋଇଥାଏ, ସେ ଜୀବନରେ ଅନେକ ପ୍ରକାର କପଟ ଅନୁଭବ କରି ଛଟପଟ ହୁଏ । ଏଭଳି ପ୍ରବଳ ପରାକ୍ରମୀ କାମଦେବଙ୍କୁ ମଧ୍ୟ ଶ୍ରୀକୃଷ୍ଣ ହସି ହସି ବଶ କରିଥିଲେ । ଶ୍ରୀକୃଷ୍ଣ କେବଳ କାମଦେବଙ୍କ ପ୍ରତି ଅନୁଗ୍ରହ କରି ନଥିଲେ, ସେ ଅଜଗର ଘରୁ ଘୃଣ ଜନ୍ତୁଟିକୁ ମଧ୍ୟ ଉଦ୍ଧାର କରିଥିଲେ ।

ବ୍ରଜ ଧାମରେ ଦୋଳଉତ୍ସବ କେତେଦିନ ପୂର୍ବରୁ ଆରମ୍ଭ ହୋଇଯାଏ । ଯୁବକମାନଙ୍କ କଥା କହିବା କ'ଣ, ବୃଦ୍ଧମାନଙ୍କଠି ମଧ୍ୟ ନବଯୌବନର ଆବର୍ତ୍ତନ ହୋଇଥାଏ । ପ୍ରତ୍ୟେକ ସ୍ଥାନରେ ଆନନ୍ଦର ଲହରୀ ଖେଳିଯାଏ । ଲୋକମାନେ ଅବିର ଓ ସୁଗନ୍ଧି ଜଳ ବ୍ୟବହାର କରି ଆନନ୍ଦ ଅନୁଭବ କରିଥାଆନ୍ତି । ଦୋଳଉତ୍ସବ ସରିଗଲା ପରେ ବସି ହୋଲରେ ଯେଉଁ ଆନନ୍ଦ, ତାହାକୁ ମଧ୍ୟ ଲୋକମାନେ ବେଶ୍ ଉପଭୋଗ କରିଥା'ନ୍ତି । ସେହି ଆନନ୍ଦ ଉତ୍ସବ ସମୟରେ ଗୋପବାସୀଗଣ 'ନବରାତ୍ରୀ' ଉତ୍ସବରେ ମାତା ଅମ୍ବିକାପୂଜା କରନ୍ତି । ସେଠାରେ ସେମାନେ ଅମ୍ବିକାଙ୍କ ସହିତ ଅମ୍ବିକେଶ୍ୱର ଶିବଙ୍କୁ ମଧ୍ୟ ପୂଜା କରନ୍ତି ଏବଂ ସରସ୍ୱତୀ ନଦୀରେ ସ୍ନାନ କରି ଆତ୍ମାକୁ ପବିତ୍ର କରନ୍ତି ।

ଶୌନକ ପଚାରିଲେ—"ହେ ମହାତ୍ମନ୍, ଯେଉଁ ଗୋପବାସୀଙ୍କ ଗୃହରେ ଆନନ୍ଦକନ୍ଦ ସ୍ୱୟଂ ଶ୍ରୀକୃଷ୍ଣ ବିରାଜମାନ କରିଛନ୍ତି, ସେମାନେ ପୁଣି ଅନ୍ୟ ଦେବଦେବୀଙ୍କ ପୂଜନ କାହିଁକି କରନ୍ତି ?"

ସୂତ କହିଲେ—"ହେ ବ୍ରହ୍ମର୍ଷିଗଣ, ବ୍ରଜପୁରର ଗୋପମାନେ ଫଳପ୍ରାପ୍ତି ଆଶାରେ କୌଣସି ପୂଜା ଅର୍ଚ୍ଚନା କରନ୍ତି ନାହିଁ । ସେମାନଙ୍କ ମଧ୍ୟରେ ସକଳ ବାସନାର ଫଳ ସ୍ୱୟଂ ଶ୍ରୀକୃଷ୍ଣ ବିରାଜମାନ କରିଛନ୍ତି । ସେମାନେ ଭାବନ୍ତି—ଅମ୍ବିକା ଓ ଶିବଙ୍କ ପୂଜନ ଫଳରେ ଆମମାନଙ୍କ ଉପରେ ଶିବଶକ୍ତିଙ୍କ ଆଶୀର୍ବାଦ ରହିବ । ତା'ର ଫଳରେ ଶ୍ରୀକୃଷ୍ଣଙ୍କ ପ୍ରତି ଆମମାନଙ୍କର ଅଟଳ ଭକ୍ତି ଜାତ ହେବ । ତେଣୁ ସେମାନେ ଶିବଶକ୍ତିଙ୍କ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଦେଲେ ।

ଗୋପୀମାନେ ଯାତ୍ରା କଥା ଶୁଣିବା ମାତ୍ରେ, ଖାଦ୍ୟପେୟ ସଜାଡ଼ି ଶଗଡ଼ ଗାଡ଼ିରେ ଲଦି ବାନ୍ଧିବାରେ ଲାଗିପଡ଼ିଲେ । ପିଲାମାନଙ୍କୁ ବେଶଭୂଷାରେ ଭୂଷିତ କରାଇ 'ଜୟ ଗୋବର୍ଦ୍ଧନ' ବୋଲି ଧ୍ୱନି ଦେଇ ଯାତ୍ରା ଆରମ୍ଭ କରିଦେଲେ ।

ଆନନ୍ଦ ମନରେ ଯାତ୍ରା ଆରମ୍ଭ କରି ସେମାନେ ଯାଇ ଅମ୍ବିକାବନରେ ପହଞ୍ଚିଗଲେ । ସେ ସ୍ଥାନଟି ଥିଲା—ଅତ୍ୟନ୍ତ ମନୋରମ । ସରସ୍ୱତୀ ନଦୀ କୂଳର ଉଭୟ ପାର୍ଶ୍ୱରେ [illegible] ସଘନ କାନନ । ତା'ର ମଝିରେ ଅମ୍ବିକାଦେବୀ ଓ ଅମ୍ବିକେଶ୍ୱର ମହାଦେବଙ୍କ ନୂତନ ମନ୍ଦିର ଥିଲା । ମନ୍ଦିରର ପ୍ରସିଦ୍ଧି ଯୋଗୁଁ ଦୂରଦୂରାନ୍ତରରୁ ଶହ ଶହ ଯାତ୍ରୀ ସେଠାକୁ ଆସୁଥିଲେ । ସେଠାକାର ସରସ୍ୱତୀ ନଦୀକୂଳର ଏକ ସ୍ୱଚ୍ଛ ଓ ନିର୍ମଳ ସ୍ଥାନରେ ବ୍ରଜବାସୀମାନେ ଶିବିର ପକାଇ ରହିବାକୁ ଲାଗିଲେ ।

ସେମାନେ ଆସ୍ଥାନ ଜମାଇ ଦେଇ, ସ୍ନାନ ସାରି ଶିବଶକ୍ତିଙ୍କ ଅର୍ଚ୍ଚନା ପାଇଁ ମନ୍ଦିରରେ ପ୍ରବେଶ କଲେ । ବିଧିବିଧାନର ସହିତ ଶିବ ଓ ଅମ୍ବିକାଙ୍କ ପୂଜନ କରି ସାରିବା ମାତ୍ରେ ସେଠାରେ ଆସି ବ୍ରାହ୍ମଣମାନେ ଉପସ୍ଥିତ ହୋଇଗଲେ । ସେମାନେ ଜାଣିଥିଲେ—ନନ୍ଦଗୋପ ହେଉଛନ୍ତି—ମହାନ୍ ଦାନୀ । ତେଣୁ ସେମାନେ ପ୍ରଚୁର ଦାନ ପାଇବା ଆଶାରେ, ବ୍ରାହ୍ମଣୋଚିତ ବେଶଭୂଷାରେ ଭୂଷିତ ହୋଇ ସେଠାରେ ପହଞ୍ଚି, ଆଶୀର୍ବାଦ ବଚନରେ ଗଗନପବନ ମୁଖରିତ କରିଦେଲେ । ଆଶୀର୍ବାଦବଚନ ଶୁଣି, ବ୍ରାହ୍ମଣମାନଙ୍କ ନାନାପ୍ରକାର ଶ୍ରୁତିପ୍ରସ୍ତି କଥାରେ ନନ୍ଦରାଜ ସନ୍ତୁଷ୍ଟ ହୋଇ, ନାନାପ୍ରକାର ସୁମିଷ୍ଟ ଖାଦ୍ୟପେୟରେ ସେମାନଙ୍କୁ ଆପ୍ୟାୟିତ କରିବାପାଇଁ ବ୍ୟବସ୍ଥା କଲେ ।

ବ୍ରାହ୍ମଣମାନେ ସୁମିଷ୍ଟ ଭୋଜନ ପାଇ ସନ୍ତୁଷ୍ଟ ହୋଇ ନାନାପ୍ରକାର ଆଶୀର୍ବାଦ ବଚନରେ ନନ୍ଦରାଜାଙ୍କୁ ଅଭିବାଦନ ଜଣାଇଲେ ।

ଶାସ୍ତ୍ରରେ ନିୟମ ଅଛି—ତୀର୍ଥ ଓ କ୍ଷେତ୍ରରେ ପହଞ୍ଚିବା ଦିନ ସମସ୍ତେ ଉପବାସ କରିବା ବିଧେୟ । ତେଣୁ ଗୋପଗୋପୀମାନେ ସରସ୍ୱତୀ ନଦୀର ସୁମିଷ୍ଟ ଜଳପାନ କରି, ସେଦିନ ଉପବାସ କରି ନିଜ ନିଜ ଶିବିରରେ ଶୋଇ ପଡ଼ିଲେ ।

ନଦୀକୂଳରେ ଥିଲା—ସଘନ ଅରଣ୍ୟ । ଦୈବଦୁର୍ଯୋଗରୁ ଅର୍ଦ୍ଧରାତ୍ରି ସମୟରେ ବଣରୁ ଗୋଟିଏ ବିଶାଳ ଅଜଗର ସର୍ପ ବାହାରିଲା । ସାପଟି ନନ୍ଦଙ୍କ ତମ୍ବୁରେ ପଶି ତାଙ୍କ ପାଦଠାରୁ ଗିଳିବାକୁ ଆରମ୍ଭ କଲା । ଏତିକିବେଳେ ନନ୍ଦଙ୍କ ନିଦ ଭାଙ୍ଗିଗଲା । ସେ ଅଜଗର ସର୍ପକୁ ଦେଖି, ଅତ୍ୟନ୍ତ ଭୟଭୀତ ହୋଇ ଉଠିଲେ । ପ୍ରାଣବିକଳରେ ସେ ପୁତ୍ର ଶ୍ରୀକୃଷ୍ଣଙ୍କୁ ଅତି ଉଚ୍ଚ ସ୍ୱରରେ ଡାକ ପକାଇଲେ ।

ଏତିକିବେଳେ ଶୌନକ ପଚାରିଲେ—"ହେ ମହର୍ଷି, ଆମ ମନରେ ଦୁଇଟି ସନ୍ଦେହଜାତ ହୋଇଛି । ଗୋଟିଏ ଶଙ୍କା ହେଉଛି—ସ୍ୱୟଂ ପରମେଶ୍ୱର ଶ୍ରୀକୃଷ୍ଣଙ୍କ ପିତା

ହୋଇ, ନନ୍ଦରାଜ ମୃତ୍ୟୁଠାରୁ ଏତେ ଭୟଭୀତ ହେଲେ କାହିଁକି ? ଏହା କ'ଣ ତାଙ୍କ ଅନୁରୂପ କାର୍ଯ୍ୟ ? ଦ୍ୱିତୀୟ ଶଙ୍କା ହେଉଛି—ଭଗବାନ୍ ଶ୍ରୀକୃଷ୍ଣ ନିଶ୍ଚୟ ସେହି ଶିବିରରେ ଥିବେ । ତେଣୁ ନନ୍ଦରାଜ ଆର୍ତ୍ତସ୍ୱରରେ ଚିତ୍କାର କରି ଶ୍ରୀକୃଷ୍ଣଙ୍କୁ ଡାକିଲେ କାହିଁକି ?"

ମୁନିମାନଙ୍କ ପ୍ରଶ୍ନର ଉତ୍ତର ଦେଇ ସୂତ ପୌରାଣିକ କହିଲେ—ହେ ମୁନିଗଣ, ଏହାହିଁ ହେଉଛି ମାନବୀ ଲୀଳା । ନନ୍ଦ କେବେହେଲେ ମୃତ୍ୟୁକୁ ଭୟ କରୁ ନଥିଲେ । ମୃତ୍ୟୁ ସମୟରେ ଶ୍ରୀକୃଷ୍ଣଙ୍କ ନାମାମୃତ ପାନରେ ନିଜକୁ ମୋକ୍ଷପଥର ଅଧିକାରୀ କରାଇବାପାଇଁ ସେପୁତ୍ର ନାମ ଧରି ଉଚ୍ଚସ୍ୱରରେ ଚିତ୍କାର କରିଥିଲେ । ତା'ପରେ ସେ ମଧ୍ୟ ଆତୁର ଭାବିଥିଲେ—ତାଙ୍କୁ ଗିଳିବା ପରେ, ଅଜଗର ନିଶ୍ଚୟ ଅନ୍ୟମାନଙ୍କୁ ଗିଳି ପକାଇବ । ସେହିମାନଙ୍କ ସୁରକ୍ଷା ନିମିତ୍ତ ନନ୍ଦ ଏପରି ଆର୍ତ୍ତଚିତ୍କାର କରିଥିଲେ । ସେ ଜାଣିଥିଲେ—ଶ୍ରୀକୃଷ୍ଣ କାଳୀୟ ସର୍ପକୁ ଦମନ କରିବା ପରି, ନିଶ୍ଚୟ ଅଜଗରକୁ ଉପଯୁକ୍ତ ଶାସ୍ତି ଦେବେ । ଦୁଷ୍ଟକୁ ଦମନ ନ କଲେ, ତା'ର ଉତ୍ପାତ ଆହୁରି ବୃଦ୍ଧି ପାଇବ । ତେଣୁ ଶ୍ରୀକୃଷ୍ଣଙ୍କ ଲୀଳାର ପ୍ରଖ୍ୟାପନ ନିମିତ୍ତ ନନ୍ଦରାଜ ଏପରି ଭାବରେ ଭୟଭୀତ ହେବାର ଅଭିନୟ କରି ଚିତ୍କାର କରିଥିଲେ ।

ତୁମମାନଙ୍କ ଦ୍ୱିତୀୟ ପ୍ରଶ୍ନର ଉତ୍ତର ହେଉଛି—ଶ୍ରୀକୃଷ୍ଣ ସେଦିନ ସଖାମାନଙ୍କ ମେଳରେ ହସକୌତୁକରେ ବିତାଇ ସେହିମାନଙ୍କ ଗହଣରେ ଅନ୍ୟତ୍ର ଅବସ୍ଥାନ କରୁଥିଲେ । କାରଣ ପୁତ୍ର ପ୍ରାପ୍ତ ବୟସ୍କ ହେବା ମାତ୍ରେ ଆଉ ମାତାପିତାଙ୍କ ଗହଣରେ ରହିବାକୁ ଇଚ୍ଛା କରେ ନାହିଁ, ସେ ଗୃହେଁ ସମବୟସ୍କ ବାଳକମାନଙ୍କର ସାହଚର୍ଯ୍ୟ । ତେଣୁ ଶ୍ରୀକୃଷ୍ଣ ନନ୍ଦରାଜଙ୍କ ଶିବିରରେ ସେଦିନ ରାତ୍ରିରେ ବିଶ୍ରାମ ନ କରି, ସଖାମାନଙ୍କ ଗହଣରେ ଅନ୍ୟତ୍ର ଶୋଇଥିଲେ ।

ଅଜଗର ଭୟରେ ନନ୍ଦ ଆର୍ତ୍ତସ୍ୱରରେ ଚିତ୍କାର କରିବାର ଅଭିନୟ କରିବା ମାତ୍ରେ, ଗୋପାଳମାନେ ନିଦରୁ ଉଠି ପଡ଼ିଲେ । ନନ୍ଦରାଜଙ୍କୁ ଅଜଗର ଗିଳୁଥିବା ଦେଖି ସେମାନେ ପ୍ରଥମେ କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲେ, ତା'ପରେ ସେମାନେ ଜଳନ୍ତା କାଠଗଡ଼ମାନ ଆଣି ଅଜଗର ଉପରେ ପ୍ରହାର କଲେ; କିନ୍ତୁ ସେଥିରେ ଅଜଗର ଆଦୌ ବିଚଳିତ ହେଲା ନାହିଁ । ତେଣୁ ସେମାନେ ନନ୍ଦରାଜଙ୍କ ସହିତ ମିଶି ଆହୁରି ଜୋର୍‌ରେ ଚିତ୍କାର କରିବାକୁ ଲାଗିଲେ ।

ସଭିଙ୍କ ପାଟିରେ ଶ୍ରୀକୃଷ୍ଣଙ୍କ ନିଦ ଭାଙ୍ଗିଗଲା । ସେ ଧାଇଁଆସି ସେଠାରେ ପହଞ୍ଚି, ସମସ୍ତ କଥା ଦେଖି, କହିଲେ—ଅରେ ଅଜଗର, ତୋର ସାହସ ଏତେ ? ତୁ କିଛି ବିଚାର ନ କରି, ମୋ' ପିତାଙ୍କୁ ଗିଳିବାକୁ ମନ ବଳାଇଛୁ ? ତୋର ମୃତ୍ୟୁକାଳ ଆସି ଉପସ୍ଥିତ ହୋଇଛି ।

ଏତକ କହି ଶ୍ରୀକୃଷ୍ଣ ବାମପାଦ ସର୍ପ ଉପରେ ଥୋଇ ଦିଅନ୍ତେ, ସଙ୍ଗେ ସଙ୍ଗେ ଅଜଗର କୁଆଡ଼େ ଉଭେଇ ଗଲା ଏବଂ ସେଠାରେ ଏକ ଦିବ୍ୟ ଶରୀରଧାରୀ ପୁରୁଷ ଉଭା ହୋଇଗଲେ । ସମସ୍ତେ ସେହି ଦିବ୍ୟ ପୁରୁଷଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ହେ ମୁନିମାନେ ! ଶ୍ରୀକୃଷ୍ଣ ଏହିପରି ଭାବରେ ଅଜଗରର ମୁଖରୁ ନିଜ ପିତାଙ୍କୁ ରକ୍ଷା କରିଥିଲେ । ତା'ପରେ ମୁନିମାନେ ଅଜଗର ସମ୍ପର୍କରେ ଶୁଣିବାକୁ ଆଗ୍ରହ ପ୍ରକାଶ କରନ୍ତେ, ସୂତମୁନି ସେମାନଙ୍କୁ ସେହି ବୃତ୍ତାନ୍ତ ଶୁଣାଇବାକୁ ତତ୍ପର ହେଲେ ।

### ଛପ୍ପୟ

ଅହି ପଦ ପକର୍ୟୋ ନନ୍ଦ ଉଠେ ଚିଲ୍ଲାଏ ଆଓ ।
ଶରଣାଗତ ପ୍ରତିପାଲ କୃଷ୍ଣ ମମ ବିପତି ମିଟାଓ ॥
ସୁନି ସବ ଆୟେ ଗୋପ ସର୍ପଙ୍କ ବହୁ ବିଧି ମାରେ ।
ପରି ନହିଁ ଛୋଡ଼େ ପୈର କୃଷ୍ଣକୁଁ ନନ୍ଦ ପୁକାରେ ॥
ନନ୍ଦନନ୍ଦନ ଆୟେ ତୁରତ, ଅହି ସିରପୈ ପଗ ଧରି ଦୟୋ ।
ପାଇ ପରମ ପଗ ସର୍ପ ତନୁ, ତଜି ବିଦ୍ୟାଧର ହ୍ୱୈ ଗୟୋ ॥



## ସୁଦର୍ଶନ ଉଦ୍ଧାର

ଋଷୀନ୍ ବିରୂପାନଙ୍ଗିରସଃ ପ୍ରାହସଂ ରୂପଦର୍ପିତଃ ।
ତୈରିମାଂ ପ୍ରାପିତୋ ଯୋନିଂ ପ୍ରଲବ୍ଧୈଃ ସ୍ୱେନ ପାପ୍ମନା ॥
(ଶ୍ରୀ.ଭା. ୧୦ସ୍କ. ୩୪ଅ. ୧୩ଶ୍ଳୋ)

### ଛପ୍ପୟ

ପ୍ରଭୁ ପୁଛେ—ତୁମ କୌନ ଯୋନି କ୍ୟୋଁ ଅଜଗର ପାଈ ।
ସୁନି ଅହି ବୋଲ୍ୟୋ—କହୂଁ କଥା ନିଜ ସୁନହୁ କନ୍ହାଈ ॥
ହୌଂ ବିଦ୍ୟାଧର ପ୍ରଥମ ସୁଦର୍ଶନ ସୁନ୍ଦର ସବ୍ ତେଂ ।
ସୁନ୍ଦରତା ବିଖ୍ୟାତ ଭଈ ମଦ ବାଢ଼୍ୟୋ ତବ ତେଂ ॥
ଲଖି କୁରୂପ ମୁନି ହଁସି ପର୍ୟୋ, ମଦ ବଶ ଭୂଲ୍ୟୋ ଧର୍ମକୁଁ ।
ସୁଖ ଦୁଃଖ ଦୂସର ଦେହୁଁ ନହିଁ, ସବ ଭୋଗେଁ କୃତ କର୍ମକୁଁ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ଶ୍ରୀକୃଷ୍ଣଙ୍କ ପ୍ରଶ୍ନ ଶୁଣି ଅଜଗର କହିଲା—ହେ ପ୍ରଭୋ, ମୁଁ ନିଜ ସୌନ୍ଦର୍ଯ୍ୟ ଗର୍ବରେ ମଦମତ୍ତ ହୋଇ ଅଙ୍ଗିରାବଂଶୀ ମୁନିମାନଙ୍କର କୁରୂପତା ଦେଖି ଉପହାସ କରିଥିଲି । ମୋର ପାପକର୍ମ ଫଳରେ ସେହି ମୁନିମାନେ ମୋତେ ଅଭିଶାପ ଦେଇ ଅଜଗର ସର୍ପରେ ପରିଣତ କରି ଦେଲେ ।

ପ୍ରାଣୀ ଯାହା ମନେ ମନେ ଭାବନା କରେ, ପରିଣତିରେ ଠିକ୍ ତାହାହିଁ ଲାଭ କରିଥାଏ । ଏହିକଥା ସେ ସମ୍ପର୍କରେ ବିଚାର କରାଯାଇପାରେ । ମଣିଷ ମନରେ କ୍ରୋଧ ଜାତ ହେଲେ, ତା'ର ଚକ୍ଷୁ ରଙ୍ଗ ହୋଇଯାଏ । ମୁଖାକୃତି ଭୀଷଣ ଏବଂ କଣ୍ଠସ୍ୱର ମଧ୍ୟ ପରିବର୍ତ୍ତିତ ହୋଇଥାଏ । ସେହିପରି କାମବାସନା ମନରେ ଉଦୟ ହେବା ମାତ୍ରେ, ମଣିଷର ସମସ୍ତ ପ୍ରକାର ଚେଷ୍ଟା ପରିବର୍ତ୍ତିତ ହୋଇଯାଏ । ମୁଖମଣ୍ଡଳରେ କାମବିକାର ପରିପୁଷ୍ଟ ହୋଇଉଠେ । ତା' ଫଳରେ ମଣିଷ କାମମସ୍ତ ହୋଇ ଉଠେ । ସେହି କାମ ଚେଷ୍ଟାରୁ ସୃଷ୍ଟିର ସମ୍ଭବ ହୋଇଛି । ବ୍ରହ୍ମାଙ୍କ ମନରେ ଯେତେବେଳେ ଯେଉଁପ୍ରକାର ଭାବନା ଜାତ ହୋଇଛି, ସେ ସମୟରେ ସେହି ପ୍ରକାର ସୃଷ୍ଟି ହୋଇ ପାରିଛି । ତାଙ୍କ ମନରେ ଗାଇବା ପାଇଁ ଚେଷ୍ଟା ଉତ୍ପନ୍ନ ହେବା ମାତ୍ରେ ଗନ୍ଧର୍ବ ସୃଷ୍ଟି ହୋଇଥିଲେ । ସେହିପରି ଯେତେବେଳେ ଦିବ୍ୟଭାବ ଜାତ ହୋଇଛି, ସେତେବେଳେ ଦେବତାମାନେ ଉତ୍ପନ୍ନ ହୋଇଥିଲେ । ମନୁଷ୍ୟ ନିଜର ଅର୍ଜିତ କର୍ମ ଫଳରେ ସୁଖଦୁଃଖ ଭୋଗ କରିଥାଏ । ମୁନିଋଷିମାନେ ମଧ୍ୟ ବ୍ୟର୍ଥରେ ଅଭିଶାପ ଦିଅନ୍ତି ନାହିଁ । ଯେତେବେଳେ ଯାହା ହେବାର ଥାଏ, ତାହା ଯେ କୌଣସିମତେ ଘଟିଥାଏ । ଅଘଟଣ ଘଟିବାର ଥିଲେ, ମୁନିଋଷିଙ୍କ ମୁଖରୁ ସେହି ପ୍ରକାର ଅଭିଶାପବାଣୀ ବାହାରି ପଡ଼େ ।

ଆମେ ଯଦି ଅନ୍ୟକୁ ଦେଖି କରି ହସିବା, ତେବେ ଲୋକେ ମଧ୍ୟ ଆମକୁ ଦେଖି ହସିବେ । ଆମେ ଅନ୍ୟକୁ ଦୟା ଦେଖାଇଲେ, ଅନ୍ୟମାନେ ଆମପ୍ରତି ଦୟା ପ୍ରଦର୍ଶନ କରିବେ । ସଂସାରର ନିୟମ ହେଉଛି—ତୁମେ ଯେପରି ଧ୍ୱନି କରିବ, ତୁମକୁ ସେହିପରି ଧ୍ୱନି ଶୁଣାଯିବ । ଅନେକ ସୁନ୍ଦରୀ ଅପ୍ସରା ଅଷ୍ଟାବକ୍ର ମୁନିଙ୍କ କୁରୂପ ଚେହେରାକୁ ଦେଖି ହସିଲେ, ମୁନି ଅଭିଶାପରୁ ସେମାନଙ୍କୁ ଲୋକମାନେ ଦେଖି ହସିଲେ, ନିଜ ପ୍ରାଣପ୍ରିୟାଙ୍କୁ ହସାଇବା ପାଇଁ ଗୋଟିଏ ଗନ୍ଧର୍ବ ପାଣିରେ ବୁଡ଼ି ବୁଡ଼ି ଯାଇ ମୁନିଙ୍କ ଗୋଡ଼ ଧରି ଘୋଷାରିଲା, ମୁନିଙ୍କ ଅଭିଶାପରୁ ସେ କୁମ୍ଭୀର ହୋଇ ଜନ୍ମଗ୍ରହଣ କଲା । ମୋ' କହିବା ବିଷୟ ହେଉଛି—ଲେଙ୍ଗଡା, ଅନ୍ଧ, କେମ୍ପା ଆଦି ଅଭିଶପ୍ତ ଲୋକମାନଙ୍କୁ ଦେଖି କୌଣସିମତେ ହସିବା ଉଚିତ ନୁହେଁ । ଅନ୍ୟର ଦୋଷଦୁର୍ଗୁଣ ସର୍ବଦା ଆଲୋଚନା କଲେ, ନିଜେ ପରିଶେଷରେ ଦୋଷୀରେ ପରିଣତ ହୋଇଯିବ । ଠିକ୍ ସେହିପରି ଅନ୍ୟମାନଙ୍କର ସୁଗୁଣ ସମ୍ବନ୍ଧରେ ସଦାସର୍ବଦା ଚର୍ଚ୍ଚା କଲେ, ନିଜେ ମଧ୍ୟ ଗୁଣବାନ ହୋଇ ପାରିବ ।

ସୂତମୁନି ଶୌନକାଦି ବ୍ରହ୍ମର୍ଷିମାନଙ୍କୁ କହିଲେ—"ହେ ମହର୍ଷିଗଣ, ଆପଣମାନେ ମୋତେ ନନ୍ଦରାଜଙ୍କୁ ଗିଳିଥିବା ଅଜଗର ସମ୍ବନ୍ଧରେ ପଚାରିଥିଲେ, ମୁଁ ତାହା କହୁଛି, ଶୁଣନ୍ତୁ ।"

ଗୋପୀ ଗୋପାଳମାନେ ଦେଖିଲେ, ଶ୍ରୀକୃଷ୍ଣଙ୍କ ପାଦ ଲାଗିବାକ୍ଷଣି, ଅଜଗର ଗୋଟିଏ ଦିବ୍ୟ ବପୁଷ୍ମାନ୍ ଯୁବକରେ ପରିଣତ ହୋଇଗଲା । ଏଣୁ ସେମାନେ ବିସ୍ମିତ ହୋଇ ତା'ର ଆଡ଼କୁ ଚାହିଁ ରହିଲେ । ଶ୍ରୀକୃଷ୍ଣ ଗୋପୀ ଗୋପାଳମାନଙ୍କ ମନୋଭାବ ଲକ୍ଷ୍ୟ କରି, ଦିବ୍ୟରୂପ ଧାରୀ ପୁରୁଷକୁ ତା'ର ରୂପ ପରିବର୍ତ୍ତନ ସମ୍ପର୍କରେ ପ୍ରଶ୍ନ କଲେ । ମାୟାଧର ଶ୍ରୀକୃଷ୍ଣ ସବୁ କିଛି ଜାଣିଥିଲେ ହେଁ, ସେହି ଦିବ୍ୟ ପୁରୁଷ ମୁଖରେ ତା'ର ଜନ୍ମବୃତ୍ତାନ୍ତ ଗୋପବାସୀଙ୍କୁ ଶୁଣାଇଥିଲେ ।

ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରଶ୍ନ ଶୁଣି ଦିବ୍ୟ ଦେହଧାରୀ ମନେମନେ ହସି କହିଲା— ଆପଣ ଘଟଘଟ ବାସୀ ସର୍ବଜ୍ଞ ଅଟନ୍ତି; ତଥାପି ଆପଣ ଯେତେବେଳେ ପଚାରୁଛନ୍ତି, ମୁଁ ମୋର ପୂର୍ବଜନ୍ମ ତଥା ଇହଜନ୍ମର କାହାଣୀ ପ୍ରକାଶ କରୁଛି ।

ଆପଣମାନେ ଜାଣନ୍ତି—ଉପଦେବତା ବିଦ୍ୟାଧରମାନେ ଅତ୍ୟନ୍ତ ସୁନ୍ଦର ସେହି ବିଦ୍ୟାଧରମାନଙ୍କ ମଧ୍ୟରେ ମୁଁ ସବୁଠାରୁ ଅଧିକ ସୁନ୍ଦର ଥିବାରୁ, ବହୁ ଗନ୍ଧର୍ବ, ଯକ୍ଷ ଓ ଦେବତା ମୋ' ସୌନ୍ଦର୍ଯ୍ୟ ଦେଖି ମୋତେ ପ୍ରଶଂସା କରନ୍ତି । ମୋତେ ଦେଖି ସମସ୍ତେ ପ୍ରଶଂସା କରୁଥିବାରୁ, ମୋ' ନାମ ହୋଇଥିଲା ସୁଦର୍ଶନ । ହେ ଭଗବାନ୍, ମୁଁ ମଧ୍ୟ ମୋ' ସୌନ୍ଦର୍ଯ୍ୟରେ ନିତାନ୍ତ ଅଭିମାନୀ ହୋଇ ଉଠିଥିଲି । ମୋ' ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ବିଦ୍ୟାଧରୀମାନେ ମୋ'ପ୍ରତି ଆସକ୍ତ ହୋଇ ପଡ଼ିଥିଲେ । ତେଣୁ ମୁଁ ସର୍ବଦା ବିଦ୍ୟାଧରୀ-ମାନଙ୍କ ଗହଣରେ କ୍ରୀଡ଼ା ବିହାର କରି କାଳ ଅତିବାହିତ କରୁଥିଲି ।

ଦିନେ ମୁଁ ବିଦ୍ୟାଧରୀଙ୍କ ଗହଣରେ ବୁଲୁଥିବା ସମୟରେ ଆଙ୍ଗିରସ ଗୋତ୍ରର କେତେକ ମୁନିଙ୍କୁ ଦେଖିଲି । କଠୋର ତପସ୍ୟା ତଥା ଖରା, ବାଦଲ, ଓ ପ୍ରଚଣ୍ଡ ବାୟୁ ସହ୍ୟ କରି ମୁନିବ୍ରତ ପାଳନ କରୁଥିବାରୁ, ସେମାନଙ୍କ ଶରୀର ନିତାନ୍ତ ଅସୁନ୍ଦର ଦେଖାଯାଉଥିଲା । ମୁଁ ମୋର ସୌନ୍ଦର୍ଯ୍ୟ ଗର୍ବରେ ଅଭିମାନୀ ହୋଇ, ସେମାନଙ୍କୁ ଉପହାସ କରିବାକୁ ଲାଗିଲି ।

ଅବଶ୍ୟ ମୁନିମାନେ ନିତାନ୍ତ ଉଦାର ଥିଲେ । ତଥାପି ମୋର ଧୃଷ୍ଟ ଆଚରଣରେ ସେମାନେ କ୍ରୁଦ୍ଧ ହୋଇ ଉଠି, ମୋତେ ଅଜଗର ସର୍ପ ହୋଇ ଜନ୍ମ ହେବା ଲାଗି ଅଭିଶାପ ଦେଲେ ।

ହେ ମହାତ୍ମନ୍, ମୁଁ ମୁନିମାନଙ୍କ ଅଭିଶାପ ଶୁଣି ନିତାନ୍ତ ଭୟଭୀତ ହୋଇଗଲି । ମୋର ସୌନ୍ଦର୍ଯ୍ୟଗର୍ବ ଚୂର୍ଣ୍ଣମାର ହୋଇ ଗଲା ।

ମୁନିମାନେ ସମ୍ଭବତଃ ଦୟାଳୁ ଓ ପରୋପକାରୀ ଅଟନ୍ତି । ସେମାନେ ମୋତେ ଅଭିଶାପ ଦେଇ, ମୋ' ମନରୁ ଗର୍ବ ଓ ଅହଙ୍କାର ଦୂର କରି ଦେଲେ । ଅନ୍ୟଥା ମୁଁ ଆତ୍ମଗର୍ବ ଫଳରେ ନର୍କ ଯନ୍ତ୍ରଣା ଭୋଗ କରିଥାଆନ୍ତି ।

ହେ ବିଶ୍ୱେଶ୍ୱର ! ସେହିମାନଙ୍କ ଅଭିଶାପ ରୂପକ ପୁଣ୍ୟ ଫଳରେ ମୁଁ ଆପଣଙ୍କର ତ୍ରିଲୋକ ବନ୍ଦିତ ପାଦଯୁଗଳକୁ ସ୍ପର୍ଶ କରିବାର ଅଧିକାରୀ ହୋଇଛି । ମୁଁ ମୋ' ଅଭିଶାପର ପ୍ରତିକାର ପାଇଁ ମୁନିମାନଙ୍କ ପାଦଧରି ଅନେକପ୍ରକାର କାକୁତିମିନତି କଲି । ତହୁଁ ଅତ୍ୟନ୍ତ କୃପା ପ୍ରଦର୍ଶନ କରି ମୁନିମାନେ କହିଲେ—ଦ୍ୱାପର ଯୁଗରେ ଭଗବାନ୍, ଶ୍ରୀକୃଷ୍ଣ ଗୋପୀ ଗୋପାଳଙ୍କ ଗହଣରେ ଅମ୍ବିକାବନରେ ଉପସ୍ଥିତ ହେବେ । ସେତେବେଳେ ତୁମେ ନନ୍ଦରାଜଙ୍କୁ ଗିଳିବାକୁ ଚେଷ୍ଟା କରିବ । ନନ୍ଦଙ୍କ ଆର୍ତ୍ତଚିତ୍କାର ଶୁଣି ଭଗବାନ୍ ଶ୍ରୀକୃଷ୍ଣ ତୁମ ଉପରେ ପାଦସ୍ପର୍ଶ କଲେ, ତୁମେ ଅଜଗର ଜନ୍ମରୁ ଉଦ୍ଧାର ପାଇ ପୁଣି ବିଦ୍ୟାଧର ରୂପରେ ନିଜ ସ୍ଥାନକୁ ଫେରି ଆସିବ ।

ହେ ଗୋପେଶ୍ୱର ! ମୁଁ ସେହିଦିନରୁ ଅଜଗର ହୋଇ ଏହି ଅମ୍ବିକାବନରେ ରହିଛି । ମୋର ପୂର୍ବଭାଗ୍ୟ ବଳରୁ ଆଜି ଆପଣଙ୍କ ଚରଣସ୍ପର୍ଶ ମୋତେ ସର୍ପ ଶରୀରରୁ ଉଦ୍ଧାର କରି ଦେଲା । ମୁଁ ମୋର ପୂର୍ବରୂପ ପାଇ ବିଦ୍ୟାଧର ଲୋକକୁ ଲେଉଟି ଯିବି ।

ହେ ଶରଣାଗତ ବତ୍ସଳ ! ଆପଣ ଅତ୍ୟନ୍ତ କରୁଣାମୟ । ମୁଁ ଆପଣଙ୍କ ପିତାଙ୍କୁ ପୀଡ଼ା ଦେଇଥିଲେ ହେଁ ଆପଣ ମୋତେ ବଧ ନ କରି ପାଦସ୍ପର୍ଶ କରି ମୋତେ ମୋର ପୂର୍ବରୂପ ଲେଉଟାଇ ଦେଇଛନ୍ତି । ହେ ଅଖିଳ କୋଟି ବ୍ରହ୍ମାଣ୍ଡ ନାୟକ ! ଆପଣ ନିଜର ସଂସାର ତାରକ ପାଦସ୍ପର୍ଶ ଦ୍ୱାରା ମୋତେ ଉଦ୍ଧାର କରି ଅଛନ୍ତି । ହେ ପରମ ପୁରୁଷ ! ହେ ଯୋଗେଶ୍ୱର ! ହେ ସନ୍ଥଜନ ପ୍ରତିପାଳକ ! ଆପଣଙ୍କ ପାଦସ୍ପର୍ଶ ଫଳରେ ମୋ' ମନରୁ ଗର୍ବ, ଅହଙ୍କାର ତଥା ଅଭିମାନ ଦୂର ହୋଇ ଯାଇଛି । ମୁନିମାନଙ୍କ ଅଭିଶାପ ଓ ଆପଣଙ୍କ ସୁଖଦସ୍ପର୍ଶ ଫଳରେ ମୁଁ ଭଲ ଭାବରେ ଅନୁଭବ କରୁଛି ଯେ, ରୂପ ସୌନ୍ଦର୍ଯ୍ୟ ଓ ସୁକାନ୍ତି କ୍ଷଣ ଭଙ୍ଗୁର । ଯାହା ଅନିତ୍ୟ, ଯାହା ନଷ୍ଟଶୀଳ ଏବଂ ଯାହାର ସ୍ଥାୟିତ୍ୱ ନାହିଁ, ତାକୁ ନେଇ ଗର୍ବ କରିବାର କିଛି ଲାଭ ନାହିଁ । ଏହି କ୍ଷଣ ଭଙ୍ଗୁର ରୂପସଜ୍ଜା ବ୍ୟତିରେକେ ଆପଣଙ୍କ ପବିତ୍ର ଚରଣହିଁ ମୋ' ଜୀବନର ଏକମାତ୍ର ପଥପ୍ରଦର୍ଶକ ହେଉ; ଏହାହିଁ ଆପଣଙ୍କଠାରେ ମୋର ଏକାନ୍ତ ପ୍ରାର୍ଥନା ।

ହେ ପରମାତ୍ମନ୍ ! କୋଟି କୋଟି ଜନ୍ମର ପୁଣ୍ୟବଳରେ ମୁଁ ଆପଣଙ୍କ ଦର୍ଶନ ପାଇଛି । ଯେଉଁ ଅନିନ୍ଦ୍ୟ ସୁନ୍ଦର ରୂପ ମୁନିମାନଙ୍କ ପକ୍ଷେ ଅଗମ୍ୟ, ତାହା ମୋ' ଭାଗ୍ୟରେ ସମ୍ଭବ ହୋଇଛି । ଯେଉଁ ବ୍ୟକ୍ତି ଆପଣଙ୍କ ନାମ କୀର୍ତ୍ତନ କରିଥାଏ, ସେ ମଧ୍ୟ ପରମପଦର ଅଧିକାରୀ ହୁଏ । ନାମ ଉଚ୍ଚାରଣ, ନାମଗାୟନ ଓ ନାମକୀର୍ତ୍ତନ ତ ଦୂରର କଥା ଯେ କେବଳ ସନ୍ଥ ମହାତ୍ମାମାନଙ୍କ ମୁଖରୁ ନାମକୀର୍ତ୍ତନ ଶୁଣିଥାଏ, ତା'ର ମଧ୍ୟ ପରମଗତି

ହୋଇଥାଏ । ଯାହାଙ୍କୁ ଆପଣଙ୍କ ଚରଣ ସ୍ପର୍ଶର ସୁଯୋଗ ମିଳିଛି, ତା’ ପକ୍ଷରେ ଶାପମୁକ୍ତ ହୋଇଯିବା ଆଶ୍ଚର୍ଯ୍ୟର ବିଷୟ ହେବ କାହିଁକି ? ମୁଁ ଆଜି ଅନୁଭବ କରୁଛି; ମୁନିମାନେ ଅଭିଶାପ ଦେଇ, ମୋ’ପ୍ରତି ଅନୁଗ୍ରହ କରିଛନ୍ତି ।

ହେ ମୁନିଗଣ ! ପୁରୁଷୋତ୍ତମ ଭଗବାନ୍ ଶ୍ରୀକୃଷ୍ଣଙ୍କ ଚରଣ ବନ୍ଦନା କରି, ସୁଦର୍ଶନ ନିଜ ଧାମକୁ ଲେଉଟିଗଲା । ନନ୍ଦରାଜ ଅଜଗର ମୁଖରୁ ରକ୍ଷା ପାଇ ଆନନ୍ଦିତ ହେଲେ ଏବଂ ଗୋପୀ ଗୋପଗଣ ଭଗବାନ୍ ଶ୍ରୀକୃଷ୍ଣଙ୍କ ମହିମାରେ ଅଭିଭୂତ ହୋଇ ପ୍ରମୁଦିତ ହେଲେ । ସେମାନେ ଆଶ୍ଚର୍ଯ୍ୟ ଚକିତ ହୋଇ ଶ୍ରୀକୃଷ୍ଣଙ୍କୁ ବାରମ୍ବାର ଆଲିଙ୍ଗନ କରି କୃତାର୍ଥ ହେଲେ ।

ଆନନ୍ଦ ମଗ୍ନ ହୋଇ ବ୍ରଜବାସୀଗଣ ସେଦିନ ରାତି କଟାଇଲେ । ପରଦିନ ପ୍ରଭାତ କାଳରୁ ବ୍ରଜବାସୀମାନେ ସ୍ନାନ, ତର୍ପଣ ଓ ଅମ୍ବିକା ପୂଜନ ଆଦି ଶେଷ କରି, ବ୍ରାହ୍ମଣମାନଙ୍କୁ ଦାନ ଦକ୍ଷିଣା ଦେଲେ । ତତ୍ପରେ ନାନାପ୍ରକାର ଭୋଜ୍ୟ ପଦାର୍ଥମାନ ପ୍ରସ୍ତୁତ କରାଇବା ସଙ୍ଗେ ସଙ୍ଗେ ସମସ୍ତେ ଆନନ୍ଦରେ ଭୋଜନ କଲେ । ତତ୍ପରେ ସେମାନେ ସେଠାରେ ତିନିଦିନ ଅତିବାହିତ କରିବା ପରେ ବ୍ରଜପୁରକୁ ଲେଉଟି ଆସିଲେ ।

ହେ ମୁନିମାନେ ! ସୁଦର୍ଶନକୁ ଉଦ୍ଧାର କରିବା ପରି, ଶ୍ରୀକୃଷ୍ଣ ମଧ୍ୟ ଶଙ୍ଖଚୂଡ଼କୁ ଉଦ୍ଧାର କରିଥିଲେ । ମୁଁ ଆପଣମାନଙ୍କୁ ‘ଶଙ୍ଖଚୂଡ଼ ଉପାଖ୍ୟାନ’ କହି ଆପ୍ୟାୟିତ କରିବି ।

## ଛପ୍ପୟ

ଲଭି ଅଶିଷ୍ଟତା ମୁନିକ ଶାପ ଦଣ୍ଡ ହୋଇ ଅହି ।
ସୁନ୍ଦର ଭୟୋ ମଦ ଚୂର ପରେଖ୍ୟା ଋଷିନ୍ହକ ନେକ ପଗ ଗହି ।
ହୈ ପ୍ରସନ୍ନ ମୁନି କହୀ ନନ୍ଦନନ୍ଦନ ଉଦ୍ଧାରେ ।
ଅବ କୃତାର୍ଥ ହୌଂ ଭୟୋ ନେହଚେଂ ନାଥ ନିହାରେ ।।
କରି ବନ୍ଦନ ଆୟସୁ ଲଇ, ଗୟୋ ସୁଦର୍ଶନ ଲୋକ ନିଜ ।
ବ୍ରଜ ମହଁ ଆୟେ ଗୋପ ସବ କଥା ଅନ୍ୟ ଅବ ସୁନହୁ ଦ୍ୱିଜ ।।



# ଶଙ୍ଖଚୂଡ଼ ଉଦ୍ଧାର

ଶଙ୍ଖଚୂଡ଼ଂ ନିହତ୍ୟୈକଂ ମଣିମାଦାୟ ଭାସ୍ୱରମ୍ ।
ଅଗ୍ରଜାୟାଦଦାତ୍ ପ୍ରୀତ୍ୟା ପଶ୍ୟନ୍ତୀନାଂ ଚ ଯୋଷିତାମ୍ ॥

(ଶ୍ରୀଭା ୧୦ସ୍କ. ୩୪ଅ. ୩୨ଶ୍ଳୋ)

## ଛପ୍‌ପୟ

ଏକ ଦିବସ ବଳ ସହିତ ଶ୍ୟାମ ସଖିଗଣ ସଙ୍ଗ ବନମହିଁ ।
ବିହରତ ଇତଉତ ନେହି ନୀର ଉମଡ଼ତ ଅତି ମନମହିଁ ॥
ମଧୁର ରାଗ ସ୍ୱର ତାଲ ଲଲିତ ଲୟଯୁତ ହରି ଗାବେଁ ।
ବିଶ୍ୱବିମୋହନ ଗାନ ଗାଇ ଗୋପିନ ହରଷାବେଁ ॥
ମନ୍ତ୍ର ମୁଗ୍ଧ ସମ ସବ ସଖୀ, ଭଇ ନ ସୁଧି ତନ ପଟ କହିଁ ।
ତବଇ ଅନୁଚର ଧନଦ କୋ, ଶଙ୍ଖଚୂଡ଼ ଆୟୋ ତହିଁ ॥

ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଭଗବାନ ଶଙ୍ଖଚୂଡ଼କୁ ଏହିପରି ଭାବରେ ବିନାଶ କରି, ତା' ଶିରରେ ଥିବା ପ୍ରକାଶମୟୀ ମଣିଟିକୁ ନେଇ ଆସିଲେ । ସକଳ ବ୍ରଜ ଯୁବତୀଙ୍କର ଆନନ୍ଦ ବର୍ଦ୍ଧନ କରାଇ, ସେ ମଣିଟିକୁ ନିଜ ବଡ଼ଭାଇ ବଳରାମଙ୍କୁ ଅର୍ପଣ କରି ଦେଲେ ।"

ପ୍ରେମରେ ପୁଲକିତ ହୋଇ ଏକାନ୍ତରେ ଆଲୋଚନା କରୁଥିବା ସମୟରେ, ସେଠାକୁ ଅନ୍ୟ କେହି ଆସିଗଲେ ସଙ୍କୋଚ ବୋଧ ହୁଏ । ତେଣୁ ପ୍ରେମୀ ଓ ପ୍ରେମିକା ସର୍ବଦା ଏକାନ୍ତ ସ୍ଥାନ ଖୋଜୁଥାନ୍ତି । ବାସ୍ତବରେ ପରସ୍ପରର ସ୍ନେହ ନିଭୃତ ନିକୁଞ୍ଜରେ ପରିସ୍ଫୁଟ ହୋଇଥାଏ । କାରଣ ସେଠାରେ ଈର୍ଷ୍ୟା, ଦ୍ୱେଷ ଓ ଅହଙ୍କାର ଲେଶମାତ୍ର ନଥାଏ କିମ୍ବା ସେଠାରେ ଗୁରୁଜନ କେହି ନ ଥିବାରୁ, ସଙ୍କୋଚ ମଧ୍ୟ ଜାତ ହୁଏ ନାହିଁ । ଯେଉଁଠାରେ କେବଳ ଏକପ୍ରାଣ, ଏକମନ ଓ ଏକ ହୃଦୟ ନେଇ ପ୍ରେମୀଯୁଗଳ ରହିଥାଆନ୍ତି, ସେ ସ୍ଥାନ ପ୍ରେମୀମାନଙ୍କ ପକ୍ଷରେ ଅତ୍ୟନ୍ତ ଅନୁକୂଳ । ସେଠାରେ ଆନନ୍ଦର ହିଲ୍ଲୋଳ, ପ୍ରେମର ମନ୍ଦାକିନୀ ତଥା ପ୍ରାଣ ପୁଲକର ଅନ୍ତର୍ନିହିତ ନିର୍ଝରିଣୀ ପ୍ରବାହିତ ହେଉଥାଏ । ସେତେବେଳେ ଅଙ୍ଗ ଶିଥିଳ, ତଥା ଶରୀର ନିଶ୍ଚେଷ୍ଟ ହୋଇଥାଏ । ସତେଯେପରି, ପ୍ରେମର ଭାବସମାଧି ଅବସ୍ଥା ସୃଷ୍ଟି ହୋଇଛି । ଏପରି ଦିବ୍ୟ ସୁଖ ଅନୁଭବ

କ୍ଷେତ୍ରରେ ଯେତ କେହି ବିପ୍ନ ଘଟାଇବା ପାଇଁ ଆସି ଉପସ୍ଥିତ ହୋଇଯାଏ, ତେବେ ତା'ଠାରୁ ବଳି ଦୁଷ୍ଟ ସଂସାରରେ ଆଉ କେହି ନାହାନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ସେଭଳି ଦୁଷ୍ଟ ଆତତାୟୀ ଏବଂ ବଧ ଯୋଗ୍ୟ ଅଟେ। କିନ୍ତୁ ଶ୍ୟାମସୁନ୍ଦରଙ୍କ ସହିତ ଦୁଷ୍ଟତା—ଆଚରଣକାରୀ ପରମ ପଦର ଅଧିକାରୀ ହୋଇଥାଏ। ଯେପରି ଅଗ୍ନିକୁ ଯେତେ ତ୍ରିକା'ର ଉପାୟରେ ସ୍ପର୍ଶ କଲେ ମଧ୍ୟ ତାହା ସ୍ପର୍ଶକାରୀକୁ ଦହନ କରିଥାଏ।

ସୂତ ମୁନି କହିଲେ—"ହେ ମୁନିଗଣ, ମୁଁ ଆପଣମାନଙ୍କୁ 'ଶଙ୍ଖଚୂଡ଼' ସମ୍ପର୍କରେ କହିବା ପାଇଁ ପ୍ରତିଶ୍ରୁତି ଦେଇଥିଲି। ଏବେ ସେହି ବିଷୟରେ କହୁଛି ଶୁଣନ୍ତୁ।"

ଭଗବାନ୍ ଶ୍ରୀକୃଷ୍ଣ ସଦାସର୍ବଦା ଗୋପୀମାନଙ୍କ ଗହଣରେ ଲୀଳା-ବିହାର କରୁଥା'ନ୍ତି। ବଳରାମଙ୍କର ସହଚରୀ ରୂପେ ପୃଥକ୍ ଗୋପୀ ମଣ୍ଡଳୀ ଥାଆନ୍ତି। କିନ୍ତୁ ଯେତେବେଳେ ରାସଗାନର ଅବସର ଆସିଯାଏ, ସେତେବେଳେ ସମସ୍ତେ ଏକମେଳ ହୋଇ ଆନନ୍ଦ ଉଲ୍ଲାସରେ ମାତି ଯାଆନ୍ତି।

ଦିନକର ଘଟଣା। ଭଗବାନ୍ ଶ୍ରୀକୃଷ୍ଣ ବଳଦେବଙ୍କ ସହିତ ମିଳିତ ହୋଇ ବନବିହାର ଉଦ୍ଦେଶ୍ୟରେ ଗମନ କରିଥିଲେ। ରାତ୍ରିରେ ସୁନ୍ଦର ବିଛାଇ ଦେଇ ଚନ୍ଦ୍ର ମଧ୍ୟ ସରଗ ରାଇଜର ଉଙ୍କି ମାରୁଥାନ୍ତି। ମନମୋହିନୀ ଗୋପ ଯୁବତୀ କଳ କଣ୍ଠରେ ଶ୍ରୀକୃଷ୍ଣଙ୍କ କୀର୍ତ୍ତି ଗାନରେ ମାତି ଥାଆନ୍ତି। କୃଷ୍ଣ ବଳରାମ ଥିଲେ—ଅତ୍ୟନ୍ତ ସୁନ୍ଦର। ତାଙ୍କର ମନମୋହନ ରୂପରେ ମୁଗ୍ଧ ହୋଇ ଗୋପକାମିନୀମାନେ ମନପ୍ରାଣ ଦେଇ ତାଙ୍କୁ ଆପଣାର କରି ନେଇଥାଆନ୍ତି। ମନୋଜ୍ଞ ପୀତ ବସ୍ତ୍ରରେ ସଜ୍ଜିତ, ଶ୍ରୀକୃଷ୍ଣ ଏବଂ ଗାଢ଼ ନୀଳବସ୍ତ୍ର ପିନ୍ଧି ଥାଆନ୍ତି ବଳରାମ। ଦୁହିଁଙ୍କ ଗଳାରେ ବନମାଳା ଆଜାନୁଲମ୍ବିତ ହୋଇଥାଏ। ଦୁହିଁଙ୍କର ଶ୍ରୀଅଙ୍ଗରେ ବହୁମୂଲ୍ୟ ଅଳଙ୍କାର ଝଲସି ଉଠୁଥାଏ—ଅଭୂଷଣ। ଗୁଡ଼ିକ ସେ ଦୁହିଁଙ୍କ ଅଙ୍ଗ ଶୋଭାରେ ଶୋଭାନ୍ୱିତ ହୋଇଥିଲେ। ବିଶାଳ ବାହୁ, ପ୍ରଶସ୍ତ ବକ୍ଷ ତଥା ଦୀପ୍ତ ଲଲାଟରେ ସୁଗନ୍ଧ ଚନ୍ଦନ ଲିପ୍ତ ହୋଇଥାଏ। ରାମ-କୃଷ୍ଣ ଯେପରି ଭାବରେ ବେଶଭୂଷଣରେ ସଜ୍ଜିତ ହୋଇ ଥିଏଥିଲେ, ଅନୁରୂପ ସାଜସଜ୍ଜାରେ ସଜ୍ଜିତା ହୋଇଥିଲେ ବ୍ରଜନାରୀଗଣ। ସେ କଳା ମେଘାଡ଼ମ୍ବର ଶାଢ଼ୀ ପିନ୍ଧି ପୂର୍ଣ୍ଣକଳା ସମନ୍ୱିତ ଶତଦେବ ଚନ୍ଦ୍ରଙ୍କ ଆଡ଼କୁ ଅନାଇ ମଞ୍ଜୁଳ ହାସ୍ୟ ବର୍ଷି ଦେଇ ପ୍ରାପ୍ତ ତାରକାବଳୀରେ ସୁଶୋଭିତ ହୋଇଥିଲେ। ବୃନ୍ଦାବନର ମନୋଜ୍ଞ କୁଞ୍ଜକାନନରେ ମଲ୍ଲୀ, ଯୂଇ, ମାଳତୀ ପ୍ରସ୍ଫୁଟିତ ହୋଇ, ସତେ ଅବା, ରାତ୍ରିଦେବୀଙ୍କ ବନ୍ଦନା ପାଇଁ ପୁଲକ ହଠିଛନ୍ତି ପରି ଜଣାପଡ଼ୁଛି। ପୁଷ୍ପକୁଞ୍ଜରେ ମଧୁମତ୍ତ ଭ୍ରମର ଗୁଣୁଗୁଣୁ ସ୍ୱରରେ ଗୀତ ଗାଇ ଗାଇ ବନାରାଣୀଙ୍କୁ ପ୍ରମୁଦିତ କରାଉଛି। ମନ୍ଦ, ସୁଶୀତଳ ତଥା ସୁଗନ୍ଧିତ ପବନ ପ୍ରବାହିତ ହୋଇ ବନବର୍ଗ ଦେବୀଙ୍କ ବର୍ଷି ଦେଇ ପ୍ରାପ୍ତ ଅନୁଭୂତ ହେଉଛି। ରାତ୍ରିର ସେହି ସୁଖଦ ପ୍ରଥମ ପ୍ରହରକୁ ସୁଖମୟ ତଥା ମଧୁମୟ କରି, ବନବିହାରୀ ଶ୍ରୀକୃଷ୍ଣ ପ୍ରେୟସୀ ବ୍ରଜାଙ୍ଗନାଙ୍କ ଗହଣରେ ମନୋରମ କ୍ରୀଡ଼ାରେ ମଗ୍ନ ହୋଇଥିଲେ।

ହେ ମୁନିଗଣ, ପ୍ରଥମେ ବ୍ରଜବାଳାମାନେ କୋକିଳଜିଣା କଣ୍ଠରେ ଗାନ କରି, ପ୍ରଭୁଙ୍କୁ ଉଲ୍ଲସିତ କରାଇଲେ । ତା'ପରେ ଆରମ୍ଭ ହେଲା ପ୍ରେମମୋହନ ବ୍ରଜବହାରୀ ଶ୍ରୀକୃଷ୍ଣଙ୍କ ଗାନ । ବଂଶୀମାଦକତାର ନିର୍ଝରିଣୀ ସ୍ୱରୂପ ସେହି ସଙ୍ଗୀତ ଲହରୀ ଗୋପାଙ୍ଗନାଙ୍କ ଚିତ୍ତରେ ଅଲୌକିକ ଆନନ୍ଦର ହିଲ୍ଲୋଳ ସୃଷ୍ଟି କରୁଥିଲା । ସ୍ୱର, ତାଳ, ଲୟ, ତାନ ତଥା ରାଗରାଗିଣୀର ଅପୂର୍ବ ସମାବେଶରେ ସେ ଗୀତ ମନରେ ଜାତ କରୁଥିଲା ଅପୂର୍ବ ପୁଲକ । ସ୍ୱରର ଆରୋହ ଅବରୋହ ଫଳରେ ଗୀତଗୁଡ଼ିକ ଜନମାନସରେ ଅଲୌକିକ ଝଙ୍କାର ସୃଷ୍ଟି କରୁଥିଲା ।

ହେ ମୁନିଗଣ, ଦୁଇଭାଇ ଏକ ସଙ୍ଗରେ ଗୀତ ଗାନ କରି ବିଶ୍ୱକୁ ସଙ୍ଗୀତମୟ କରି ତୋଳିଲେ । ଦୁଇଭାଇଙ୍କର ମନମୋହନ ତଥା ମଧୁର ଗାନ ଶୁଣି ଗୋପିକାମାନେ ଏପରି ତନ୍ମୟ ହୋଇଗଲେ ଯେ, ସେମାନଙ୍କର ବାହ୍ୟଜ୍ଞାନ ରହିଲା ନାହିଁ । କାହାର ଶିରରୁ ଓଢ଼ଣା ଖସି ପଡ଼ିଲା ତ, କାହା ବେଣୀରୁ ଗଜରାହାର ଖସି ପଡ଼ିଲା । ଆଉ କାହାର କାଞ୍ଚୁଲାର ଡୋର ଛିଡ଼ି ବକ୍ଷୋଜ ଶିଥିଳ ହୋଇଗଲା । କାହାର ବେଣୀବନ୍ଧନ ସମ୍ପୂର୍ଣ୍ଣ ଫିଟି ଯାଇ କେଶପାଶ ବିସ୍ତୃତ ହୋଇ ବାୟୁର ପ୍ରବାହରେ ଫର୍ ଫର୍ ହୋଇ ଉଡ଼ିଲା । ସମସ୍ତେ ପ୍ରେମରେ ବିଭୋର ହୋଇ ଉଠି, ଚେତନା ହରାଇ ବସିଲେ । ଠିକ୍ ରସ ପରିପାକ ସମୟରେ ମହାନ୍ ବାଧା ଆସି ଉପସ୍ଥିତ ହୋଇଗଲା । ଶୃଙ୍ଗାର ରସ ଯେତେବେଳେ ଅଢମାନାରେ ହୃଦୟକୁ ମତାଇ ରଖିଥିଲା, ସେହି ସମୟରେ କରୁଣ ରସ ସମାବେଶ ହୋଇ ପରିସ୍ଥିତିକୁ ଭିନ୍ନ ଧରଣର କରିଦେଲା । ଅନୁରାଗ ମଧ୍ୟରେ ବିରହର ଆବଶ୍ୟକତା ପରିସ୍ଥିତିକୁ ଭିନ୍ନ ଦିଗରେ ମୋଡ଼ି ଦେଲା । ଗୋପୀନାଥଙ୍କ ମଧୁମୟ ମିଳନ ମୁହୂର୍ତ୍ତରେ କୁବେରଙ୍କ ଅନ୍ୟତମ ଅନୁଚର ଶଙ୍ଖଚୂଡ଼ ଆସି ସେଠାରେ ଉପସ୍ଥିତ ହୋଇଗଲା ।

ଶଙ୍ଖଚୂଡ଼ ଥିଲା—ନିତାନ୍ତ କାମୀ ଓ ଲମ୍ପଟ । ବହୁ ସୁନ୍ଦରୀ ରମଣୀଙ୍କ ଏକତ୍ର ସମାବେଶ ଦେଖି ସେ ଆଉ ନିଜକୁ ଆୟତ୍ତ କରି ପାରିଲା ନାହିଁ ।

ଶଙ୍ଖଚୂଡ଼ ଆତ୍ମବଳ ଓ ଦର୍ପରେ ନିତାନ୍ତ ଅଭିମାନୀ ହୋଇଥିବାରୁ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ସାମାନ୍ୟ ମାନବ ବାଳକ ରୂପେ ମନେ କରି ଗୋପୀମାନଙ୍କ ମଧ୍ୟରେ ହଇଚଇ ସୃଷ୍ଟି କରିଦେଲା । ସେ ଗୋପୀମାନଙ୍କ ମଧ୍ୟରୁ ସର୍ବାପେକ୍ଷା ଅଧିକ ସୁନ୍ଦରୀ ଗୋପିକାକୁ ବଳାତ୍କାରରେ ନେଇ ଯିବାକୁ ମନେ ମନେ ସ୍ଥିର କଲା । ସେ ଉନ୍ମତ୍ତ କାହୁଁ ଜାଣିବ—ଶ୍ରୀରାମକୃଷ୍ଣଙ୍କଦ୍ୱାରା ସଂରକ୍ଷିତା ବ୍ରଜବନିତାମାନଙ୍କୁ ବାୟୁ ଦେବତା ମଧ୍ୟ ମନରେ ଖରାପ ଧାରଣା ପୋଷଣ କରି ଛୁଇଁ ପାରନ୍ତି ନାହିଁ । କିନ୍ତୁ ମୃତ୍ୟୁର ବଶବର୍ତ୍ତୀ ହୋଇ ଶଙ୍ଖଚୂଡ଼ ଅଘଟଣ ଘଟାଇବାକୁ ଆଦୌ ପଶ୍ଚାତ୍ପଦ ହେଲା ନାହିଁ । ସେ ନିଃଶଙ୍କ ଚିତ୍ତରେ ଦୁଇଭାଇଙ୍କ ସମ୍ମୁଖରେ କେତେଜଣ ସୁନ୍ଦରୀ ବ୍ରଜକାମିନୀଙ୍କୁ କନ୍ଧରେ ବସାଇ ଉତ୍ତର ଦିଗକୁ ଧାଇଁବାରେ ଲାଗିଲା ।

ବ୍ରଜବାମାମାନେ ଶଙ୍ଖଚୂଡ଼ର କବଳରେ ପଡ଼ି ଶ୍ରୀକୃଷ୍ଣଙ୍କ ନାମ ଧରି ଆର୍ତ୍ତଚିତ୍କାର କରିବାକୁ ଲାଗିଲେ । ନାରୀମାନଙ୍କର କରୁଣକ୍ରନ୍ଦନ ଶୁଣିବା ମାତ୍ରେ ଦୁଇଭାଇ ଆଶ୍ୱାସନାପୂର୍ଣ୍ଣ ବଚନ କହି ଗୋଟିଏ ଶାଳବୃକ୍ଷକୁ ଉପାଡ଼ି ଶଙ୍ଖଚୂଡ଼ର ପଛେ ପଛେ ଧାଇଁଲେ । ରାମକୃଷ୍ଣଙ୍କର ଅସାଧାରଣ ବଳ ଓ ସାହସ ଲକ୍ଷ୍ୟ କରି ଶଙ୍ଖଚୂଡ଼ ବ୍ରଜବାମାଙ୍କୁ ଛାଡ଼ିଦେଇ ପ୍ରାଣଭୟରେ ଧାଇଁ ପଳାଇଲା । ତହୁଁ ଶ୍ରୀକୃଷ୍ଣ ଭୟଭୀତା ନାରୀମାନଙ୍କ ଦାୟିତ୍ୱ ବଳରାମଙ୍କ ହସ୍ତରେ ଅର୍ପଣ କରି ଶଙ୍ଖଚୂଡ଼ର ଅନୁସରଣ କଲେ । ଏହି ସମୟରେ ବଳରାମ ଅବଶ୍ୟ ଶ୍ରୀକୃଷ୍ଣଙ୍କୁ ବାଧା ଦେଇଥିଲେ; କିନ୍ତୁ ସାନଭାଇର ସାହସ ଓ ଶଙ୍ଖଚୂଡ଼ର ମଣି ସମ୍ବନ୍ଧରେ ଆଗ୍ରହ ପାଇ ଆଉ ଶ୍ରୀକୃଷ୍ଣଙ୍କୁ ବାରଣ କଲେ ନାହିଁ ।

ହେ ମୁନିଗଣ, 'ମରଣ କାଳେ ନିଦ୍ରା ଗଲେ, ଯମ କି ଛାଡ଼ିଦେବ ଭଲେ' ନ୍ୟାୟରେ ଶ୍ରୀକୃଷ୍ଣ ଶଙ୍ଖଚୂଡ଼କୁ ଅନୁସରଣ କରି ଧାଇଁବାକୁ ଲାଗିଲେ । ଶଙ୍ଖଚୂଡ଼ ଜୀବନ ବିକଳରେ ଆତ୍ମରକ୍ଷା ପାଇଁ ଯେତେ ପ୍ରକାର ଚେଷ୍ଟା କଲେ ମଧ୍ୟ ଶ୍ରୀକୃଷ୍ଣ ତାଙ୍କୁ ଛାଡ଼ିଲେ ନାହିଁ । ବିରାଡ଼ି ଯେପରି ମୂଷାକୁ ଜୀବନରୁ ମାରିବା ପୂର୍ବରୁ, ତା' ସାଥିରେ କେତେ ସମୟ ଧରି ଖେଳ ଆରମ୍ଭ କରିଥାଏ, ଠିକ୍ ସେହିପରି ଭଗବାନ୍ ଗୋପୀନାଥ ପ୍ରାଣପ୍ରିୟାଙ୍କ ଅପମାନର ପ୍ରତିଶୋଧ ନେବାପାଇଁ ଶଙ୍ଖଚୂଡ଼ର ପଛେ ପଛେ ଧାଇଁବାକୁ ଲାଗିଲେ । ଶେଷରେ ସେ ମୁଷ୍ଟି ଆଘାତ କରି ଶଙ୍ଖଚୂଡ଼ର ଗଣ୍ଡିରୁ ମୁଣ୍ଡଟିକୁ ଛଡ଼ାଇ ଦେଲେ ଏବଂ ତା' ଶିରରୁ ମୂଲ୍ୟବାନ୍ ମଣିଟି କାଢ଼ି ନେଇ ବଳରାମଙ୍କ ହସ୍ତରେ ଅର୍ପଣ କଲେ ।

ହେ ମୁନିଗଣ ! ଶ୍ରୀକୃଷ୍ଣଙ୍କ ସାହସ ଓ ପରାକ୍ରମ ସମ୍ବନ୍ଧରେ ଗୋପଯୁବତୀମାନେ ପୂର୍ବରୁ ବହୁବାର ଜାଣିଥିଲେ ହେଁ, ସଦ୍ୟ ବିପଦରୁ ଉଦ୍ଧାର ପାଇ ଅତ୍ୟନ୍ତ ଆନନ୍ଦିତା ହୋଇ ଗୋପୀନାଥଙ୍କୁ ଅଭିନନ୍ଦନ ଜଣାଇଲେ । ବଳରାମ ସାନଭାଇର ପରାକ୍ରମ ଓ ଉଦାରତାରେ ମୁଗ୍ଧ ହୋଇ ତାହାଙ୍କୁ ଆଲିଙ୍ଗନ କଲେ ।

ହେ ମୁନିଗଣ ! ଏହିପରି ବିଷାଦ ଓ ହର୍ଷ ମଧ୍ୟରେ ସେହି ଚନ୍ଦ୍ରିକାଧୌତ ରଜନୀଟି ବିତିଗଲା । ପରଦିନ ପ୍ରଭାତରୁ ଗୋପୀମାନେ ନିଜ ନିଜ ବାସଗୃହକୁ ଫେରିଗଲେ । ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଏତେ ସ୍ନେହ କରୁଥିଲେ ଯେ, କ୍ଷଣେମାତ୍ର ତାଙ୍କୁ ନିକଟରୁ ଦୂରରେ ରହିପାରୁ ନଥିଲେ ।

## ଛପ୍ପୟ

କାମୀ ହୃୟମହିଁ କାମ ଜାନ ନାରିନ ଲକ୍ଷିୟ ଲଗେଗ୍ୟା ।
ଲଇ ସୁନ୍ଦରୀ ପକରୀ ଦୁଷ୍ଟ ଉତର ଦକ୍ଷି ଭାଗେଗ୍ୟା ।।
ଗୋପୀ କରତୀ ହିଇପ ଭଟଗ ବଲ—ହରି ପୀଛେ ଜବ ।
ଛୋଡ଼ି ଭଗେଗ୍ୟା ହରି କରେଗ୍ୟା ଶୀଶ ଧଡ଼ତୈଁ ନ୍ୟାରେ ତବ ।।

ଶିର ଚୂଡ଼ାମଣି ଲଇକେଂ, ବଳଦାଉଙ୍କୁ ଦେଲେ ଦଇ ।
ଶଙ୍ଖଚୂଡ଼—ଉଦ୍ଧାର କୀ, କଥା ସମାପତ ହୋଇ ଗଇ ॥



# ଗୋପୀମାନଙ୍କ ବ୍ୟସ୍ତତା

**ଗୋପ୍ୟଃ କୃଷ୍ଣେ ବନଂ ଯାତେ ତମନୁଦ୍ରୁତଚେତସଃ ।**
**କୃଷ୍ଣଲୀଲାଃ ପ୍ରଗାୟନ୍ତ୍ୟୋ ନିନ୍ୟୁର୍ଦୁଃଖେନ ବାସରାନ୍ ॥**

(ଭାଗବତ-୧୦ସ୍କ, ୩୫-ଅ, ୧-ଶ୍ଳୋକ)

## ଛପ୍ପୟ

ଶୌନକ ପୂଛେଁ—ସୂତ ! କହୋ କୈସେ ଗୋପୀଗନ ।
ବିନୁ ହରି ଦରଶନ ରହେ ଜାଇଁ ଜବ ଗୋଚାରନ ବନ ॥
ସୂତ କହେଁ—ଲୈ ଧେନୁ ବେନୁଧର ବନ ଜବ ଜାୱେଁ ।
ତବ ସବ ଗୋପୀ ଗୀତ କୃଷ୍ଣକେ ହିଲ ମିଲ ଗାୱେଁ ॥
ଯୁଗଲ ଗୀତ ଗାୱେଁ ସୁନେ, ହରିଲୀଲା ଚିନ୍ତନ କରେଁ ।
ତନୁ ପୁଲକିତ ମନ ମୋଦଯୁତ, ନେହ ନୀର ନୟନନି ଭରେଁ ॥

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଭଗବାନ୍ ଶ୍ରୀକୃଷ୍ଣ ଯେତେବେଳେ ବଣକୁ ଗୋଚାରଣ ପାଇଁ ଚାଲିଯିବାପରେ, ଗୋପୀମାନେ ତାଙ୍କର ଚିନ୍ତାରେ ଅଧୀର ହୋଇ ପଡ଼ୁଥିଲେ । ସେମାନେ ଶ୍ରୀକୃଷ୍ଣଙ୍କ ଲୀଳା ଗାଇ ଅତି କଷ୍ଟରେ କାଳ ଅତିବାହିତ କରୁଥିଲେ ।"

ଯେଉଁମାନେ ଶ୍ରୀକୃଷ୍ଣଙ୍କଠାରେ ମନ, ଧନ ଓ ଶରୀର ଅର୍ପଣ କରିଥିଲେ, ସେଭଳି ସୌଭାଗ୍ୟଶାଳୀ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଆଉ ଅଧିକ କହିବା କ'ଣ ? ସେମାନେ ମନମୋହନଙ୍କ ପାଦପଦ୍ମରେ ସବୁକିଛି ଅର୍ପଣ କରିବା ପରେ; ଆଉ ସାଧନ, ପୂଜନ ଓ ଯୋଗାଭ୍ୟାସ କରିବେ କାହିଁକି ? ସେମାନେ ସମସ୍ତ ଧରାର ମହାନ୍ ଯନ୍ତ୍ରୀଙ୍କ ହସ୍ତରେ ନିଜ ଶରୀର ଓ କାର୍ଯ୍ୟାବଳୀ ରୂପକ ଯନ୍ତ୍ରଟିକୁ ଅର୍ପଣ କରିବା ପରେ ନିଶ୍ଚିନ୍ତ ହୋଇଯାଇଥିଲେ । ଏଣିକି ଯନ୍ତ୍ରଟିକୁ ସେ କିପରି ଚଳାଇବେ, ତାହା ତାଙ୍କର (ପରମେଶ୍ୱରଙ୍କର ଚିନ୍ତା) କରିବାର ବିଷୟ । ଦେହଧାରୀମାନେ ସମସ୍ତ ଆଶା, ଆକାଙ୍କ୍ଷା ଓ ଅଭିଳାଷ ବର୍ଜନ

କରି ଦେଇଥିବାରୁ, ସେଥିପାଇଁ ଆଦୌ ବ୍ୟାକୁଳ ନଥିଲେ । ସେମାନଙ୍କ ମତରେ— ଆମେ ଭଗବାନ୍ ଶ୍ରୀକୃଷ୍ଣଙ୍କର ସେବକତ୍ୱ ସ୍ୱୀକାର କରିଥିବାରୁ, ଆମର ସ୍ୱତନ୍ତ୍ର ଇଚ୍ଛା ରହିଲା କୁଆଡ଼ୁ ? ସେ ଆମକୁ ଯାହା ଯାହା ନିର୍ଦ୍ଦେଶ ଦେବେ, ଆମେ ସେହି ଆଦେଶକୁ କେବଳ ପାଳନ କରିବୁ । ହଁ, ଆମର ଏକମାତ୍ର କର୍ତ୍ତବ୍ୟ ହେଉଛି—ତାଙ୍କ ଲୀଳାଗାନ କରିବା । ତାହାହିଁ ହେଉଛି—ଆମର ଅବସର ବିନୋଦନ ।

ହେ ମୁନିଗଣ ! ସେତେବେଳେ ସେମାନଙ୍କ ଦୃଷ୍ଟିପଥରେ କେବଳ ଶ୍ରୀକୃଷ୍ଣଙ୍କ ମନମୋହନ ରୂପ ନାଚି ଉଠୁଥାଏ । ସେମାନେ ସ୍ୱରୂପ ଧ୍ୟାନରେ ତନ୍ମୟ ହୋଇ ରହନ୍ତି । ଭଗବାନ୍‌ଙ୍କ ଲୀଳାହିଁ ସେମାନଙ୍କ ଜୀବନର ଅଧାର । ସେହି କୁଞ୍ଜବିହାରୀଙ୍କ ଲୀଳାଗାନହିଁ ସେମାନଙ୍କ ମନ, ବଚନ ଓ କର୍ମର ଏକମାତ୍ର ଧେୟ ।

ସୂତମୁନି କହିଲେ—"ହେ ମୁନିଗଣ ! ମୁଁ ଆପଣମାନଙ୍କୁ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ପରସ୍ପର ସ୍ନେହ ସମ୍ବନ୍ଧରେ ଅନେକ ଆଖ୍ୟାୟିକା ଶୁଣାଉଛି । ଆପଣମାନଙ୍କ ମଧ୍ୟରେ ସେ ବିଷୟରେ ଯଦି କିଛି ସନ୍ଦେହ ଥାଏ, ତେବେ ମୋତେ ଅବଗତ କରାଇ ପାରନ୍ତି । ମୁଁ ମୋର ସାଧ୍ୟମତେ ଆପଣମାନଙ୍କ ସନ୍ଦେହମୋଚନ କରିବାକୁ ଚେଷ୍ଟା କରିବି ।"

ବ୍ରହ୍ମମୁନି ଶୌନକ ପଚାରିଲେ—"ହେ ସୂତମୁନି ! ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ମଧ୍ୟରେ ଘଟିଥିବା ଯେତେ ଯେତେ ଲୀଳା ଅମେମାନେ ଶୁଣିଛୁ, ସେଥିରୁ ଏତିକିମାତ୍ର ସାରକଥା ଆମେ ଜାଣିଛୁ ଯେ, ଗୋପିକାମାନେ ଶ୍ରୀକୃଷ୍ଣଙ୍କୁ ପ୍ରାଣଠୁ ବଳି ଅଧିକ ସ୍ନେହ କରୁଥିଲେ । ପ୍ରାଣୀ ଅନ୍ନଭୋଜନ ଓ ଜଳଗ୍ରହଣ ବିନା ହୁଏତ କିଛି ଦିନ ବଞ୍ଚିରହି ପାରେ, କିନ୍ତୁ ପ୍ରାଣସଞ୍ଚାର ବିନା କୌଣସିମତେ ବଞ୍ଚିପାରେ ନାହିଁ । ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ଯଦି ଏତେ ଘନିଷ୍ଠ ସ୍ନେହ ଥିଲା, ତେବେ ତାଙ୍କୁ ଦୀର୍ଘସମୟ ନ ଦେଖି ସେମାନେ ଜୀବନଧାରଣ କରୁଥିଲେ କିପରି ?"

ସୂତମୁନି ଏହାର ଉତ୍ତର ଦେଇ କହିଲେ—ମହାଶୟ, ଆପଣଙ୍କ ପ୍ରଶ୍ନ ଓ ସନ୍ଦେହ ବାସ୍ତବିକ ଅତ୍ୟନ୍ତ ଉପାଦେୟ । ଗୋପିକାମାନେ ଶ୍ରୀକୃଷ୍ଣଙ୍କୁ ଜୀବନଠାରୁ ଅଧିକ ଭଲ ପାଇବା ଫଳରେ ତାଙ୍କ ବିନା କ୍ଷଣକାଳ ମଧ୍ୟ ଜୀବିତ ରହିପାରୁ ନଥିଲେ, ଏହା ସତ୍ୟ । ଯେତେବେଳେ ସ୍ୱରୂପତଃ ଶ୍ରୀକୃଷ୍ଣ ସେମାନଙ୍କ ନିକଟରେ ରହୁ ନଥିଲେ, ସେତେବେଳେ ତାଙ୍କର ପବିତ୍ର ଲୀଳା ଗୋପୀମାନଙ୍କ ଆଖି ଆଗରେ ଝଲସି ଉଠୁଥିଲା । ସେମାନେ ଏକତ୍ରିତ ହୋଇ ସେହି ମନୋରମ ଲୀଳାଗାନରେ ସମସ୍ତ ଅତିବାହିତ କରୁଥିଲେ । ମୁଁ ଆପଣମାନଙ୍କୁ ସେହି ଲୀଳାଗାନ ମଧ୍ୟରୁ ଗୀତଟିଏ ଶୁଣାଉଛି ।

"ଗିରିଧର ମୁରଲୀ ବଜାଉଁ ✻
କର କପୋଳ ଧରି ଗତ ଅନୁପତ ବାଙ୍କୀ ଭୃକୁଟି ନଚାଉଁ ॥ ୧ ॥

ମୁଖ ପୁଁ କତ ମୁରଲୀ କୋ ପୁନି ପୁନି,
ଛେଦନ ଅଁଗୁରି ଫିରାଔଁ ।
ସୁନତ ମଧୁର ସ୍ୱର ସୁରଲଲନାଗନ,
ସୁମନ ସରନ ବନ୍ଧ ଯାଔଁ ॥ ୨ ॥
ଖିସକତ ନୀବୀ ସୁମନ ଝରତ କଚ,
ଖୁଲି ଇତ ଉତ ପବଗଔଁ ।
ଲଜ୍ଜାବଶ ବିସ୍ମିତ-ସୀ ହ୍ୱୈ କୈ, ତନୁ ସୁଧି ବୁଦ୍ଧି ବିସରାଔଁ ॥ ୩ ॥
କୋକିଲ କଣ୍ଠୀ ସୁମଣ ସୁମରି ହରି,
ନୟନନ ନୀର ବହାଔଁ ।
ଧନ୍ୟ ଧନ୍ୟ ବ୍ରଜ କୀ ବେବନିତା, ନିତ ଗୋବିନ୍ଦ ଗୁନ ଗାଔଁ ॥ ୪ ॥

ଗିରିଧାରୀ ମଧୁର ସ୍ୱରରେ ମୁରଲୀ ବଜାଇ ଅଛନ୍ତି, ସେ ବଂଶୀଟିକୁ ନିଜର ଖଣ୍ଡମଣ୍ଡଳରେ ଲଗାଇ ମଧୁର ସ୍ୱରର ଆଳାପ କରିବା ସଙ୍ଗେ ସଙ୍ଗେ ଭ୍ରୂଭଙ୍ଗିକୁ ନଚାଇ ନୂଆ ନୂଆ ସ୍ୱରର ପ୍ରସାର କରୁଛନ୍ତି । ବଂଶୀର ଛିଦ୍ରମାନଙ୍କରେ ଅଙ୍ଗୁଳି ଚଳାଇ ପୁଣି ପୁଣି ଏପରି ନିତ୍ୟ ନୂତନ ସ୍ୱର ଝଙ୍କାର ସୃଷ୍ଟି କରୁଛନ୍ତି ଯେ, ଯାହାର ଶ୍ରବଣରେ ଦେବ ଲଳନାମାନେ ମଧ୍ୟ କାମଶରରେ ପୀଡ଼ିତା ହେଉଛନ୍ତି । ସେମାନଙ୍କ ପିନ୍ଧିଲା ବସନ ଗ୍ରନ୍ଥି ଶିଥିଳ ହୋଇ ଯାଉଛି, ବେଣୀବନ୍ଧନରୁ କୁସୁମ ଝରି ପଡ଼ୁଛି ଏବଂ କେଶପାଶ ଖୋଲି ପବନରେ ଏଣେତେଣେ ଫର୍ ଫର୍ ହୋଇ ଉଡ଼ୁଛି । ସେମାନେ ମନେ ମନେ ଲଜ୍ଜିତା ହେବା ସଙ୍ଗେ ସଙ୍ଗେ ବିସ୍ମୟ ସାଗରରେ ବୁଡ଼ି ନିଜ ଦେହର ଅସ୍ତିତ୍ୱ ପାସୋରି ଦେଉଛନ୍ତି ।

କୋକିଳ କଣ୍ଠୀ ବ୍ରଜବନିତାମାନେ ଶ୍ରୀକୃଷ୍ଣଙ୍କ ସ୍ମରଣରେ ନୟନରୁ ଅଶ୍ରୁ ଝରାଉ ଅଛନ୍ତି । ଧନ୍ୟ ସେହି ବ୍ରଜପୁର ନାରୀ, ଯେଉଁମାନେ ପ୍ରତିଦିନ ଗୋବିନ୍ଦଙ୍କ ଗୁଣଗାନରେ ସମସ୍ତ ଅତିବାହିତ କରୁଛନ୍ତି ।

ଶ୍ରୀ ସୂତମୁନି ଏହିପରି ଭାବରେ ହରି ଲୀଳାମୃତ ଗୀତଟିଏ ଗାଇବା ପରେ, କହିଲେ, ହେ ମୁନିମାନେ, ଶ୍ରୀକୃଷ୍ଣଙ୍କର ମଧୁର ବାଲଲୀଳା ସମ୍ବନ୍ଧରେ ଗୋପୀମାନେ ଗୀତମାନ ଗାନ କରିବା ସଙ୍ଗେ ସଙ୍ଗେ ଭାବସମାଧିରେ ମଗ୍ନ ହଉଥିଲେ ।

ସେମାନେ ଶ୍ୟାମସୁନ୍ଦରଙ୍କ ଲୀଳାର ବିଭିନ୍ନ ବିଷୟ ସମ୍ବନ୍ଧରେ ସ୍ମରଣ କରି ତନ୍ମୟ ହୋଇ ଉଠୁଥିଲେ । ଗୋପୀମାନଙ୍କ ମଧ୍ୟରେ ଶ୍ରୀମତୀଙ୍କ ଭାବସମାଧି ଥିଲା—ଅଲୌକିକ । ସଙ୍କେତେ ଯେପରି, ତାଙ୍କ ଚକ୍ଷୁ ସମକ୍ଷରେ ଲୀଳାମୟ ଶ୍ରୀକୃଷ୍ଣ ଅହରହ ଲୀଳା ଲଗାଇ, ତାଙ୍କ ମନହରଣ କରୁଛନ୍ତି ।

ହେ ମୁନିଗଣ, ଗୋପୀମାନଙ୍କର ଅନୁରାଗ ଅବର୍ଣ୍ଣନୀୟ । ଶ୍ରୀକୃଷ୍ଣ ମଧ୍ୟ ମାନବୀଲୀଳା ପ୍ରଦର୍ଶନରେ ଜଗତଜନଙ୍କ ସହିତ ବ୍ରଜପୁରବାସୀ ଜନସାଧାରଣ, ବିଶେଷତଃ ଗୋପୀ

ଗୋପାଳମାନଙ୍କୁ ଆନନ୍ଦିତ କରାଉଥିଲେ । ସେହି ଲୀଳା ମଧ୍ୟରେ ଅସୁର ସଂହାର ଥିଲା— ଗୌଣକାର୍ଯ୍ୟ, ହେ ଶୌନକାଦି ମୁନିଗଣ, ମୁଁ ଆପଣମାନଙ୍କୁ ଆଜି କେତୋଟି ଅସୁରଙ୍କ ବିଷୟରେ କହୁଛି ଶୁଣନ୍ତୁ ।

## ଛପ୍‌ପୟ

ହରି ଲୀଳା ଆହାର ପାନ ଜଇ କାଲ ବିତାଓଁ ।
ସବ କଛୁ କାରଜ କରେଁ କନ୍ତୁ ନହିଁ କୃଷ୍ଣ ଭୁଲାଓଁ ॥
ପାଲେ ଯମ ଅରୁ ନିୟମ ବୈଠି ଆସନସହ ସାଧେଁ ।
କରିକେ ପ୍ରାଣାୟାମ ଧାରଣା ଧରି ଆରାଧେ ॥
କରି ପ୍ରଭୁ ପ୍ରତ୍ୟାହାର ପୂନ, ଧ୍ୟାନ ସମାଧି ଲଗାଇକେଁ ।
ସତ୍ସୁପଯୋଗ ପଲ ପଲ କରହିଁ, ହରି ଲୀଲା ନିତ ଗାଇକେଁ ॥



## ଅରିଷ୍ଟାସୁର ଉଦ୍ଧାର

ଅଥ ତର୍ହ୍ୟାଗତୋ ଗୋଷ୍ଠମରିଷ୍ଟୋ ବୃଷଭାସୁରଃ ।
ମହୀଂ ମହାକକୁତ୍‌କାୟଃ କମ୍ପୟନ୍ ଖୁର ବିକ୍ଷତାମ୍ ॥
( ଭାଗବତ ୧୦ସ୍କ, ୩୬ଅ, ୧ଶ୍ଳୋକ )

## ଛପ୍‌ପୟ

ଏକ୍ ଦିବସକୀ ବାତ ଅରିଷ୍ଟାସୁର ବ୍ରଜ ଆୟୋ ।
ଭୂପ ଛିପାୟୋ ଦୈତ୍ୟ ବୈଲକୋ ବେଷ ବନାୟୋ ॥
ଖୁରଟେଂ ଖୋଦତ ମହୀ ଉମାହବେ ସୀଂଗ ଚଲାଓଁ ।
ବାର ବାର ମଲ-ମୂତ୍ର କରେଁ ଖଲ ଖେଲ ଦିଖାଓଁ ॥
ଗିରତ ଗର୍ଭ ଗୟାନକେ, ବୃଷଭ ଶବ୍ଦ ଭୀଷନ କରତ ।
ସକଲ ଗୋପ ଗୋପୀ ଡରତ, ଖଲ ହରିକୁଁ ଖୋଜତ ଫିରତ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ଏହା ପରେ ବ୍ରଜଧାମକୁ ଅରିଷ୍ଟ ନାମକ ଅସୁର ବୃଷଭ ରୂପ ଧାରଣ କରି ଆସିଲା । ସେ ନିଜ ଖୁରାରେ ପୃଥିବୀକୁ ଖୋଳିବା ସଙ୍ଗେ ସଙ୍ଗେ ଭୀଷଣ ହମ୍ବାରଡ଼ି ଦେଇ ଦିଗବିଦିଗକୁ ପ୍ରକମ୍ପିତ କଲା ।

ଦୁଷ୍ଟ ଲୋକମାନେ ଏପରି ବିଚିତ୍ର ବେଶଭୂଷାରେ ବାହାରି ପଡ଼ନ୍ତି ଯେ, ଭଲ ଭଲ ଲୋକମାନେ ଅନେକ ସମୟରେ ଭ୍ରମରେ ପଡ଼ିଯାଆନ୍ତି । ଏକଦା ଧର୍ମରାଜ ଯୁଧିଷ୍ଠିରଙ୍କଠାରେ ଜଣେ ନାସ୍ତିକ ବ୍ରାହ୍ମଣବେଶ ଧାରଣ କରି ଅଧର୍ମ ଉପଦେଶ ଦେବାକୁ ଲାଗିଲା । ଅବଶ୍ୟ ପରେ ସେପରି ଅଧର୍ମ ଆଚରଣକାରୀକୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯାଇଥିଲା । ମହାବୀର ହନୁମାନଙ୍କୁ ବଧ କରିବା ଲାଗି କାଳନେମି ସାଧୁବେଶ ଧାରଣ କରି ହନୁମାନଙ୍କ ପଥରୋଧ କରିଥିଲା ଏବଂ ମହାବୀର ତା' କପଟବେଶରେ ଭୁଲିଯାଇ, ତାକୁ ଗୁରୁ କରିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ । ଯେତେବେଳେ ତା'ର ପ୍ରକୃତ ରୂପ ଜଣାପଡ଼ିଲା, ମହାବୀର ହନୁମାନ ତାକୁ ଗୁରୁଦକ୍ଷିଣା ସ୍ୱରୂପ ଯମଲୋକକୁ ପଠାଇ ଦେଇଥିଲେ । ଜଗଜ୍ଜନନୀ ଜାନକୀ ମଧ୍ୟ ରାବଣର ସାଧୁବେଶ ଦେଖି ଭୁଲିଯାଇଥିଲେ । ଆଉ କାହା କଥା କ'ଣ କହିବା; ମୋହିନୀବେଶଧାରୀ ଭଗବାନ୍ ବିଷ୍ଣୁ ଦେବତାଙ୍କପରି ବେଶ ଧାରଣ କରିଥିବା ରାକ୍ଷସ ରାହୁକୁ ମଧ୍ୟ ଅମୃତ ପରଷି ଦେଇଥିଲେ । ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ଦୁଷ୍ଟମାନେ ଚତୁରତାପୂର୍ବକ ଜାଲ ବିଛାଇ ନିରୀହ ଲୋକମାନଙ୍କର ଅପକାର କରନ୍ତି । ଅବଶ୍ୟ ଏ' ପ୍ରକାର ମନ୍ଦ ଉଦ୍ଦେଶ୍ୟ ବେଶିଦିନ ସ୍ଥାୟୀ ହୋଇ ପାରେ ନାହିଁ । ତନେ ନା ତନେ ତା'ର ଅସଲ ରୂପ ପଦାକୁ ଫୁଟି ପଡ଼େ । ସାଧାରଣ ନିରୀହ ଲୋକମାନଙ୍କୁ ଭଣ୍ଡିବା ପାଇଁ ନାନାପ୍ରକାର ବେଶ ଧାରଣ କରିବା ଅବଶ୍ୟ ଅନ୍ୟାୟ; କିନ୍ତୁ ଭଗବାନଙ୍କୁ ଖୁସି କରାଇବା ବା ଚିଡ଼ାଇବା ଉଦ୍ଦେଶ୍ୟରେ କପଟ ବେଶଧାରଣ କଲେ, ବିଶେଷ କିଛି ଯାଏ ଆସେ ନାହିଁ । ଶ୍ୟାମସୁନ୍ଦରଙ୍କ ସହିତ ଯେପରି ବ୍ୟବହାର କଲେ ମଧ୍ୟ ସେ ପ୍ରସନ୍ନ ହୋଇ ପରମପଦ ଦାନ କରନ୍ତି । କାନ୍ଦି, ଗୀତଗାଇ ପ୍ରେମରେ ବିଭୋର ହୋଇ, କିମ୍ବା ମନରେ ଦ୍ୱେଷଭାବ ରଖି ତାଙ୍କ ପାଖରେ ପହଞ୍ଚିଗଲେ, ପ୍ରାଣୀର କଲ୍ୟାଣ ହୋଇଥାଏ । କାରଣ ମଙ୍ଗଳମୟଙ୍କ ଦର୍ଶନରେ ମଙ୍ଗଳ ନ ହେବ କିପରି ?

ସୂତମୁନି କହିଲେ—"ହେ ମୁନିଗଣ ! ସବୁବେଳେ ସୁମିଷ୍ଟବସ୍ତୁ ଆନନ୍ଦ ଦିଏ ନାହିଁ । ମଝିରେ ମଝିରେ ଭିନ୍ନ ସ୍ୱାଦର ବସ୍ତୁ ଆସ୍ୱାଦନ କଲେ ସୁମିଷ୍ଟ ପଦାର୍ଥର ସ୍ୱାଦ ଅଧିକ ରୋଚକ ହୁଏ । ଆପଣମାନେ ଗୋପୀ-ଗୋବିନ୍ଦଙ୍କ ଅମୃତମୟୀ ଲୀଳା ସମ୍ବନ୍ଧରେ ଶୁଣିଲେଣି । ଏଥର ଆଉ ଗୋଟିଏ ଦୁଷ୍ଟ ଅସୁରର କାହାଣୀ ଶୁଣନ୍ତୁ ।"

ଅଶ୍ୱ ନାମକ ଗୋଟିଏ ଅସୁର କଂସର ଦୂତ ରୂପେ କାର୍ଯ୍ୟ କରୁଥିଲା । ସେ ଯେଉଁଠାରେ ଉପସ୍ଥିତ ହେଉଥିଲା, ସେଠାରେ ନାନାପ୍ରକାର ବିଘ୍ନ ଜାତ କରାଉଥିଲା । ତା' ନାମ ଶୁଣିବାମାତ୍ରେ ଦେବତାମାନେ ଭୟ କରୁଥିଲେ ।

ଦିନେ କଂସ ତାକୁ ଡାକି କହିଲା—ତୁମେ ଅତ୍ୟନ୍ତ ବଳଶାଳୀ ଅସୁର ରୂପେ ବିଖ୍ୟାତ ହୋଇଛ । ମୋର ଗୋଟିଏ କଠିନ କାର୍ଯ୍ୟ କରିବା ଲାଗି ମୁଁ ତୁମକୁ ନିଯୁକ୍ତ କରୁଛି । ତୁମେ ମୋ' କାର୍ଯ୍ୟ କରିବ ତ ?

ଏହା ଶୁଣି ଅଶ୍ୱାସୁର କଂସର କାର୍ଯ୍ୟ କରିବାକୁ ପ୍ରସ୍ତୁତ ହୋଇଯାଇ କହିଲା— ଆପଣ ଆଜ୍ଞା ଦେଲେ, ମୁଁ ଯେ କୌଣସି କଠିନ କାର୍ଯ୍ୟ କରିବାପାଇଁ ପ୍ରସ୍ତୁତ ଅଛି ।

ତାହା ଶୁଣିବା ମାତ୍ରେ କଂସ ଶ୍ରୀକୃଷ୍ଣଙ୍କ ବଳବୀର୍ଯ୍ୟର କାହାଣୀ କହି ତାଙ୍କୁ ବଧ କରିବା ଲାଗି ଅରିଷ୍ଟକୁ ଆଜ୍ଞା ଦେଲା ।

ଏହା ଶୁଣି ଅରିଷ୍ଟ କହିଲା—ମହାରାଜ, ମୁଁ କୃଷ୍ଣର ସବୁ କଥା ଜାଣେ । ସେ ବୃନ୍ଦାବନରେ ଗାଈ ଚରାଏ ଏବଂ ଗାଈମାନଙ୍କର ସେବା କରେ । ସେ ଇନ୍ଦ୍ରଙ୍କ କୋପରୁ ଗାଈମାନଙ୍କୁ ରକ୍ଷା କରି, 'ଗୋବିନ୍ଦ' ଉପାଧି ଧାରଣ କରିଛି । ମୁଁ ଗୋଟିଏ ଷଣ୍ଢ ରୂପ ଧାରଣ କରି ତା'ର ଗୋ-ଗୋଷ୍ଠରେ ପ୍ରବେଶ କରିବି । ଗାଈମାନଙ୍କ ପ୍ରତି ତା'ର ଅତ୍ୟନ୍ତ ଭକ୍ତିଥିବାରୁ, ସେ ମୋତେ ବଧ କରିବ ନାହିଁ । ତେଣୁ ମୁଁ ତାକୁ ଅନାୟାସରେ ବଧ କରି ପାରିବି ।

ତହୁଁ କଂସ କହିଲା—କୃଷ୍ଣ ଅତ୍ୟନ୍ତ ଚତୁର । ସେ ଖୁବ୍ ଶୀଘ୍ର ଅସୁରମାନଙ୍କୁ ଚିହ୍ନି ପାରୁଛି । ଗୋଟିଏ ଅସୁର ବାଛୁରି ରୂପ ଧାରଣ କରି, ତାକୁ ମାରିବା ଲାଗି ଯାଇଥିଲା । ସେ ତାକୁ ସହଜରେ ବଧ କରିଛି ।

ତହୁଁ ଅରିଷ୍ଟାସୁର ହସି ହସି କହିଲା—ମହାରାଜ, ଆପଣ ସାଧାରଣତଃ ବଳହୀନ ଅସୁରମାନଙ୍କୁ କୃଷ୍ଣ ପାଖକୁ ପଠାଇଛନ୍ତି । ତେଣୁ ସେ ସେମାନଙ୍କୁ ବଧ କରିଛି । ମୁଁ ଏକ ଭୀଷଣାକାର ଷଣ୍ଢ ରୂପ ଧାରଣ କରି ଯିବି ଏବଂ ଶ୍ରୀକୃଷ୍ଣଙ୍କୁ ବଧ କରି, ଅସୁର କୁଳର ଗୌରବ ରକ୍ଷା କରିବି ।

କଂସ ଅରିଷ୍ଟର ସାହସ ଦେଖି ତାକୁ ଶ୍ରୀକୃଷ୍ଣଙ୍କୁ ବଧ କରିବା ଲାଗି ଆଦେଶ ଦେଲା ।

ଏହା ପରେ ସୂତମୁନି କହିଲେ—ହେ ମୁନିଗଣ କଂସର ଆଦେଶ ପାଇବା ମାତ୍ରେ, ଅସୁର ଗୋଟିଏ ଭୀଷଣାକାର ବୃଷଭ ରୂପ ଧାରଣ କରି ବୃନ୍ଦାବନ ଅଭିମୁଖେ ପ୍ରସ୍ଥାନ କଲା । ସେ ଗୋଟିଏ ଚଳମାନ ନୀଳ ପର୍ବତ ପରି ଦିଶୁଥିଲା । ସେ ବ୍ରଜଭୂମିରେ ପ୍ରବେଶ କରି, ନିଜ ଖୁରାରେ ଭୂମି ଖୋଳି ଗର୍ଜି, ଘୁମୁରି ଭୀଷଣ ଶବ୍ଦ କରିବାକୁ ଲାଗିଲା । ସେ ବ୍ରଜପୁରର ଲୋକମାନଙ୍କୁ ଦେଖିବା ମାତ୍ରେ ଗୋଡ଼ାଇ ଗୋଡ଼ାଇ ମାରିବାକୁ ଲାଗିଲା ଏବଂ ମଳମୂତ୍ର ତ୍ୟାଗ କରି ଗୋପବାସୀମାନଙ୍କୁ ଭୟଭୀତ କରାଇଲା ।

ଅସୁରର ଭୀଷଣ ରୂପ ଓ ଗର୍ଜନରେ ଗୋପପୁରବାସୀ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଲେ । କେତେକ ସ୍ତ୍ରୀଙ୍କର ଗର୍ଭସ୍ରାବ ହୋଇଗଲା ଏବଂ ଆଉ କେତେ ଗୋପୀ ଭୟରେ ମୂର୍ଚ୍ଛିତା ହୋଇଗଲେ । ଗୋପୀ ଗୋପାଳମାନଙ୍କ ଭୟ ବିହ୍ୱଳିତ ଆର୍ତ୍ତନାଦରେ ଗୋପପୁରର ଗଗନ-ପବନ ପ୍ରକମ୍ପିତ ହେବାକୁ ଲାଗିଲା ।

ତହୁଁ ଗୋପପୁରର ସାଧାରଣ ଜନତା ଭାବିଲେ—ଆଜିଯାଏ ଗୋପପୁରରେ ଯେତେ ବିପଦ ପଡ଼ିଥିଲା—ଏହା ସବୁଠାରୁ ବଡ଼ ବିପଦ । ଏଥିରୁ କେବଳ ଆମମାନଙ୍କୁ ଶ୍ରୀକୃଷ୍ଣ ହିଁ ରକ୍ଷା କରି ପାରିବେ । ତେଣୁ ସେମାନେ ଆର୍ତ୍ତସ୍ୱରରେ ଶ୍ରୀକୃଷ୍ଣଙ୍କ ନାମ ଧରି ଡାକୁଡାକୁ ଲାଗିଲେ ।

ଭଗବାନ୍ ଶ୍ରୀକୃଷ୍ଣ ଦୂରରୁ ପାଟିକରି କହିଲେ—ଭୟ କର ନାହିଁ । ଭୟକର ନାହିଁ ! ମୁଁ ଏହି ଦୁଷ୍ଟକୁ ଯମପୁରକୁ ପଠାଇ ଦେଉଛି । ଶ୍ରୀକୃଷ୍ଣଙ୍କୁ ଦେଖି ପକାଇ ଅଶ୍ୱ ହମ୍ବାରଡ଼ି ଦେଇ ଚିତ୍କାର କରିବାକୁ ଲାଗିଲା ଏବଂ ଲାଙ୍ଗୁଳ ଉଠାଇ, ଆଖି ଲାଲ୍ ଲାଲ୍ କରି, ଶିଙ୍ଗ ହଲାଇ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କରିବାକୁ ଆଗେଇ ଆସିଲା । ଶ୍ରୀକୃଷ୍ଣ ଅସୁରର ଆସ୍ଫାଳନକୁ ଭ୍ରୂକ୍ଷେପ ନ କରି, ତାକୁ ନାନାପ୍ରକାର କୁବାକ୍ୟ କହି ଭର୍ତ୍ସନା କରିବା ସଙ୍ଗେ ସଙ୍ଗେ କହିଲେ ଛଦ୍ମ ବେଶରେ ତୁ ଅଶ୍ୱାସୁର । ମୁଁ ତୋତେ ଭଲଭାବରେ ଜାଣିଛି । ମୁଁ ଅସୁରମାନଙ୍କ ଦର୍ପଦଳନ ଲାଗି ଜନ୍ମଗ୍ରହଣ କରିଛି । ତେଣୁ ମୁଁ ତୋର ଅଭିମାନ ସଙ୍ଗେ ସଙ୍ଗେ ଚୂର୍ଣ୍ଣ କରି ଦେଉଛି ।

ହେ ମୁନିଗଣ, ସେ ସମୟରେ ଶ୍ରୀକୃଷ୍ଣ ନିଜ ଶରୀରରେ ତୈଳମର୍ଦ୍ଦନ କରି ସଖା ମାନଙ୍କ ଗହଣରେ ଯମୁନାକୁ ସ୍ନାନ କରିବା ଲାଗି ଯାଉଥିଲେ । ସଖାମାନଙ୍କ କାନ୍ଧରେ ହାତରଖି ମନମଉଜରେ ଯାଉଥିବା ସମୟରେ, ଶ୍ରୀକୃଷ୍ଣ ଅଶ୍ୱାସୁର ସମ୍ମୁଖୀନ ହୋଇଥିଲେ ।

ଶ୍ରୀକୃଷ୍ଣଙ୍କ ଭର୍ତ୍ସନାରେ ଅଶ୍ୱାସୁର ବିବ୍ରତ ହୋଇ ଉଠିଲା । ସେ ନାଗଡାପ ପରି ଫୁ··ଫୁ···କାର କରି ଶ୍ରୀକୃଷ୍ଣଙ୍କ ଆଡ଼କୁ ଧାଇଁ ଆସିଲା । ସେତେବେଳେ ତା’ ମୁଖରୁ ହୁଁ···ହୁଁ·· ଶବ୍ଦ ବାହାରୁଥିଲା । ସେ ମୁହଁ ଫୁଲାଇ, ଶିଙ୍ଗ ତଳକୁ କରି ଓ ଲାଙ୍ଗୁଳ ଘୂରାଇ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କଲା ।

ଅଶ୍ୱର ପ୍ରଚଣ୍ଡ ଆକ୍ରମକୁ ପ୍ରତିହତ କରିବା ପାଇଁ ଭଗବାନ୍, ଶ୍ରୀକୃଷ୍ଣ ନିଜ ଶରୀରକୁ ପର୍ବତାକାର କରି ଦେଲେ । ସେ ସହସା ଅଗ୍ରସର ହୋଇ ଅଶ୍ୱାସୁରର ଶିଙ୍ଗ ଦୁଇଟିକୁ ବଜ୍ର ମୁଷ୍ଟିରେ ଧରି ପକାଇଲେ । ଶ୍ରୀକୃଷ୍ଣ ଅସୁରର ଶିଙ୍ଗ ଧରିବାମାତ୍ରେ ଅଶ୍ୱ ପ୍ରଭୁଙ୍କ ପରାକ୍ରମ ବେଶ୍ ଜାଣି ପାରିଲା । ସେ ମନେମନେ ଇଷ୍ଟଚିନ୍ତା କରି, ଛଟପଟ ହେବାକୁ ଲାଗିଲା । ଏତିକି ବେଳେ ଶ୍ରୀକୃଷ୍ଣ ଅଶ୍ୱାସୁରକୁ ଏତେ ଜୋର୍‌ରେ ପଛକୁ ଠେଲି ଦେଲେ ଯେ, ଅସୁର ସେ ପ୍ରହାର ସହି ନ ପାରି ତଳେ ଗୁଡ଼ିଗୋଡ଼ ମେଲାଇ ପଡ଼ିଗଲା । ଶ୍ରୀକୃଷ୍ଣଙ୍କ ପ୍ରଚଣ୍ଡ ପ୍ରହାରରେ ସେ ତଳେ ପଡ଼ିଯାଇ ଆଖି ତରାତରା କରି ବିକଳରେ ଅନାଇ ରହିଲା । ସେତିକିରେ ତା’ର ପ୍ରାଣବାୟୁ ଉଡ଼ିଗଲା । ଅଶ୍ୱାସୁରର ବିନାଶ ହୁଅନ୍ତେ, ଦେବତାମାନେ ଶ୍ରୀକୃଷ୍ଣଙ୍କ ମସ୍ତକରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ।

ଦେବତାମାନଙ୍କ ଶତ୍ରୁ ଅରିଷ୍ଟାସୁରର ମୃତ୍ୟୁ ସମ୍ବାଦ ଶୁଣି କଂସ ଅତ୍ୟନ୍ତ ଦୁଃଖିତ ହୋଇ ମନେ ମନେ ଭାବିଲା—ନାଃ, ଆଉ କୌଣସି ଅସୁରଙ୍କୁ ପଠାଇବି ନାହିଁ । କୃଷ୍ଣ ବଳରାମ ଦୁହିଁଙ୍କ ମଥୁରାକୁ ଡକାଇ ଆଣି ଏଇଠାରେ ତାଙ୍କୁ ବଧ କରିବି । ଏହା ଚିନ୍ତାକରି, କଂସ ଦୁର୍ଦ୍ଧର୍ଷ ଅସୁରମାନଙ୍କୁ ଡକାଇ ମନ୍ତ୍ରଣା କରିବାକୁ ଲାଗିଲା ଏବଂ ଶ୍ରୀକୃଷ୍ଣ ବଳରାମଙ୍କୁ ମଥୁରା ଆଣିବା ଉଦ୍ଦେଶ୍ୟରେ ଅକ୍ରୁରଙ୍କୁ ଗୋପପୁରକୁ ପଠାଇବା ଲାଗି ମନେ ମନେ ସ୍ଥିର କଲା ।

## ଛପ୍‌ପୟ

ଅଓ୍ୱ ତ ଲଖେଯା ଅରିଷ୍ଟ ଦୁଷ୍ଟ ଶ୍ରୀହରି ଲଲକାରେଯା ।
ଭୟୋ୍ୟା କୁପିତ ଅତ ଅସୁର ଶ୍ୟାମ ନେ ଅପ୍ତଡ଼ ମାରେଯା ।।
ସୀଙ୍ଗ ଉଖାରେ ପକରି ଭୟୋ ନର୍ବଲ ଡକରୟୋ ।
ମୁଖତେଂ ଉଗିଲେ ରକ୍ତ ବୃଷଭ ପ୍ରଭୁ ମାରି ଗରୟୋ ।।
ଅସୁର ମାରି ବ୍ରଜମହଁ ଗୟେ, ସାଧୁ ସାଧୁ ସବଈ କହେଁ ।
କୃଷ୍ଣବାହୁ ପାଲିତ ସକଲ, ବ୍ରଜବାସୀ ନର୍ଭୟ ରହେଁ ।।



## କଂସର ମନ୍ତ୍ରଣା

ଅମାତ୍ୟାନ୍ ହସ୍ତିପାଂଶ୍ଚୈବ ସମାହୂୟାହ ଭୋଜରାଟ୍ ।
ଭୋ ଭୋ ନିଶମ୍ୟତାମେତଦ୍ ବୀରଚାଣୂରମୁଷ୍ଟିକୌ ।।
ନନ୍ଦବ୍ରଜେ କିଲାସାତେ ସୁତାବାନକଦୁନ୍ଦୁଭେଃ ।
ରାମକୃଷ୍ଣୌ ତତୋ ମହ୍ୟଂ ମୃତ୍ୟୁଃ କିଲ ନିଦର୍ଶିତଃ ।।
(ଶ୍ରୀ.ଭା. ୧୦ସ୍କ. ୩୬ଅ. ୨୨-୨୩ଶ୍ଲୋ)

## ଛପ୍‌ପୟ

ଅବ ମଥୁରା କୀ ବାତ କଂସକୀ ସୁନହୁ ମହାମୁନ ।
ଭୋଜରାଜ ଅତ ଦୁଃଖିତ ଭୟୋ ବୃଷଭାସୁର ବଧ ସୁନ ।।

ମନ୍ତ୍ରହେତୁ ସବ ସଚିବ ସଭା ମେଂ କଂସ ବୁଲାୟେ ।
ତବଇ କୀର୍ତ୍ତନ କରତ ଦେବ-ଋଷି ନାରଦ ଆୟେ ॥
ନାରଦଜୀନେ ପୋଲ ସବ ଦଈ ଖୋଲ ବସୁଦେବ କୀ ।
ରୋହନ ସୁତ ବଲଦେବ ହୈଂ, ଜନେ କୃଷ୍ଣ ସୁତ ଦେବକୀ ॥

ଶ୍ରୀ ଶୁକଦେବ କହିଲେ—ହେ ରାଜନ୍, କଂସ ନିଜର ମାହୁନ୍ତ ତଥା ମନ୍ତ୍ରୀଗଣଙ୍କୁ ଡକାଇ ଆଣିଲା । ସେ ସେମାନଙ୍କୁ ସମ୍ବୋଧନ କରି କହିଲା—ହେ ବୀରବର ଚାଣୂର, ହେ ମୁଷ୍ଟିକ, ତୁମେମାନେ ମୋର ଗୋଟିଏ ଭୟର କାରଣ ଶୁଣ । ମୁଁ ଶୁଣିଛି—ବସୁଦେବଙ୍କ ପୁତ୍ର ଶ୍ରୀକୃଷ୍ଣ ଓ ବଳରାମ ଗୋପପୁରରେ ରହୁଛନ୍ତି । ସେ ଦୁହେଁ ମୋର ମୃତ୍ୟୁର କାରଣ ଅଟନ୍ତି । ମୁଁ ସେ ଦୁହିଙ୍କୁ ମଥୁରାପୁରକୁ ଡକାଇ ଆଣିବାକୁ ଇଚ୍ଛା କରୁଛି ।

ଯାହା ଦୈବର ନିର୍ଦ୍ଦେଶ, ତା'ର ସୂଚନା ପୂର୍ବରୁ ମିଳିଯାଇଥାଏ । ଯାହା ଦୈବର ଘଟଣା, ତାହା ଧୀରେ ଧୀରେ ଘଟିବାରେ ଲାଗିଥାଏ । ଯେତେ ଉପାୟ ଚିନ୍ତା କଲେ ମଧ୍ୟ ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଯାଏ । ସୁଫଳ ମିଳିବାର ଥିଲେ, ସାମାନ୍ୟ ଉପାୟରେ କାର୍ଯ୍ୟସିଦ୍ଧି ହୁଏ । ମନୁଷ୍ୟ ସବୁବେଳେ ନିଜର ମଙ୍ଗଳ ପାଇଁ କାର୍ଯ୍ୟ ଆରମ୍ଭ କରେ; କିନ୍ତୁ ଭାଗ୍ୟରେ ମନ୍ଦ ଲେଖାଥିଲେ, ମନୁଷ୍ୟର ସକଳ ଚେଷ୍ଟା ବିଫଳ ହୋଇଥାଏ । ଚୋର, ଜାରପୁରୁଷ ଓ ଅନ୍ୟାନ୍ୟ ମନ୍ଦ ଆଚରଣକାରୀମାନେ ସର୍ବଦା ନିଜର ମଙ୍ଗଳ ପାଇଁ କାର୍ଯ୍ୟରେ ଲାଗିପଡ଼ନ୍ତି । କିନ୍ତୁ ସେମାନଙ୍କ କାର୍ଯ୍ୟକୁ ଲୋକମାନେ ସର୍ବଦା ନିନ୍ଦା କରନ୍ତି । ତେଣୁ ସେମାନେ ସର୍ବଦା ଲୁଚିଛପି ସେ ପ୍ରକାର କାର୍ଯ୍ୟ କରିଥା'ନ୍ତି । ମନ୍ଦ କର୍ମର ଫଳ ସବୁବେଳେ ମନ୍ଦ ହୋଇଥାଏ । ଶେଷରେ ମନ୍ଦ ଆଚରଣକାରୀ ନରକରେ ପଡ଼ି ଅଶେଷ ଯାତନା ଭୋଗ କରନ୍ତି । ତେଣୁ ଯେଉଁ ଯେଉଁ କାର୍ଯ୍ୟର ପରିଣାମ ଦୁଃଖକର, ମନୁଷ୍ୟ ସେପରି କାର୍ଯ୍ୟ କରିବା ଉଚିତ ନୁହେଁ ।

ହେ ମୁନିଗଣ, ମୁଁ ତୁମାନଙ୍କୁ ଏପର୍ଯ୍ୟନ୍ତ ପ୍ରଭୁଙ୍କର ଗୋପଲୀଳା ସମ୍ବନ୍ଧରେ ଆଖ୍ୟାୟିକା ଶୁଣାଇ ଆସିଲି; ବୃନ୍ଦାବନର ଲୀଳା ଅନନ୍ତ । ତାହା ମୁଁ କେବେହେଲେ ବର୍ଣ୍ଣନା କରି ପାରିବ ନାହିଁ । ତେଣୁ ଏଥର ତୁମେମାନେ ମଥୁରାଲୀଳା ଶ୍ରବଣ କର । କଂସ ନିଜର ମଙ୍ଗଳ ପାଇଁ ଯେଉଁ ପ୍ରକାର ମାୟା ଆରମ୍ଭ କଲା, ତାହା ମନଧ୍ୟାନ ଦେଇ ଶ୍ରବଣ କର ।

ଅରିଷ୍ଟାସୁର ନିଧନରେ କଂସ ଅତ୍ୟନ୍ତ ବ୍ୟସ୍ତ ହୋଇ ଉଠିଲା । ସେ ଅହରହ ଶ୍ରୀକୃଷ୍ଣ ଓ ବଳରାମଙ୍କ ମୃତ୍ୟୁ ଉପାୟ ଚିନ୍ତା କରିବାକୁ ଲାଗିଲା । ସେ ଯୋଗମାୟାଙ୍କଠାରୁ ଶୁଣିଥିଲା—ତା'ର ଶତ୍ରୁ ଗୋପରେ ବଢ଼ୁଛି । ତେଣୁ ସେ ପୂତନାଠାରୁ ଆରମ୍ଭ କରି ଅରିଷ୍ଟାସୁର ପର୍ଯ୍ୟନ୍ତ ବହୁ ଅସୁରଙ୍କୁ ପଠାଇ ଶତ୍ରୁ ନିବାରଣ ପାଇଁ ଚେଷ୍ଟା କଲା; କିନ୍ତୁ

ଅସୁରମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କଦ୍ୱାରା ମୃତ୍ୟୁବରଣ କରି, ଭବଜନ୍ମରୁ ମୁକ୍ତ ହୋଇଗଲେ । ଏହି ଚକ୍ରାରେ କଂସ ଭିତରେ କମ୍ପିତ ହୋଇ ଶୋଇ ପାରଲା ନାହିଁ । ସେ ସ୍ୱପ୍ନରେ ନାନାଦ ଅଶୁଭ ସ୍ୱପ୍ନ ଦେଖି ମନେ ମନେ ବିଚଳିତ ହୋଇ ପଡ଼ିଲା । ରକ୍ତ ବସ୍ତ୍ରଧାରୀ ପୁରୁଷ, ବିଧବା ନାରୀ, କୁପିତ ବ୍ରାହ୍ମଣ, ମର୍କଟ, କାକ, ଶୂକର ଓ ଗର୍ଦ୍ଦଭ ଆଦି ଜନ୍ତୁଙ୍କର ବିବିଧ କୃତ୍ୟ ସ୍ୱପ୍ନରେ ଦେଖି ସେ ଅତ୍ୟନ୍ତ ବିଚଳିତ ହେବାକୁ ଲାଗିଲା ।

ଦିନେ ସେ ଅତ୍ୟନ୍ତ ବ୍ୟସ୍ତ ହୋଇ ସଭାରେ ବସିଥିବା ସମୟରେ ମହର୍ଷି ନାରଦ ଆସି ତା' ନିକଟରେ ଉପସ୍ଥିତ ହୋଇ ସମାଚାର ପଚାରିଲେ ।

ନାରଦଙ୍କଠାରୁ ଆଶ୍ୱାସନାପୂର୍ଣ୍ଣ ବାଣୀ ଶୁଣି କଂସ କରଯୋଡ଼ି କହିଲା—"ହେ ମହାରାଜ, ମୁଁ ମୋର ଦୁଃଖର କାରଣ ଆପଣଙ୍କ ଆଗରେ ଲୁଚାଇବି କାହିଁକି ? ଗୋପରେ ଜାତ ହୋଇଥିବା ନନ୍ଦର ପୁତ୍ର ଶ୍ରୀକୃଷ୍ଣ ଗୋଟି ଗୋଟି କରି ମୋର ସମସ୍ତ ଅସୁର ବୀରଙ୍କୁ ବଧ କରି ସାରିଲାଣି ।

ତହୁଁ ନାରଦ କିଛି ନଜାଣିଲା ପରି କହିଲେ—"ମହାରାଜ, ଶ୍ରୀକୃଷ୍ଣଙ୍କୁ ଆପଣ ନନ୍ଦର ପୁତ୍ର ବୋଲି କହୁଛନ୍ତି କାହିଁକି ? ସେ ତ ମଥୁରାର ଅନ୍ୟତମ ଯାଦବ ବୀର ବସୁଦେବଙ୍କ ପୁତ୍ର !"

କଂସ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲା—"ମହାମୁନିବର ! ମୁଁ ତ ବସୁଦେବ ଓ ଦେବକୀଙ୍କୁ ବନ୍ଦୀଶାଳାରେ ରଖାଇ, ସେମାନଙ୍କର ସମସ୍ତ ସନ୍ତାନଙ୍କୁ ବଧ କରିଛି । ପୁଣି ତା'ର ପୁତ୍ର ଆସିଲା କେଉଁଠୁ ?"

ଦେବର୍ଷି ନାରଦ ଶ୍ରୀକୃଷ୍ଣଙ୍କ ଜନ୍ମର ସମସ୍ତ ରହସ୍ୟ ବୁଝାଇ କହିବା ସଙ୍ଗେ ସଙ୍ଗେ ପୁଣି କହିଲେ—ତୁମେ ବସୁଦେବଙ୍କର ସାତଗୋଟି ପୁତ୍ରଙ୍କୁ ମାରିଛ । ଅଷ୍ଟମ ସନ୍ତାନଟି କନ୍ୟା ବୋଲି ତୁମେ ଜାଣିଛ; କିନ୍ତୁ ସେ ପ୍ରକୃତରେ ନନ୍ଦ ଓ ଯଶୋଦାଙ୍କର କନ୍ୟା । ବସୁଦେବ ଦେବକୀଙ୍କ କୋଳରେ ଜାତ ଅଷ୍ଟମ ପୁତ୍ରକୁ ଦୈବୀଶକ୍ତି ବଳରେ ଗୋପକୁ ନେଇଯାଇ ସେଠାରେ ରଖାଇ ଆସିଲେ ଏବଂ ଯଶୋଦାଙ୍କର କନ୍ୟାଟିକୁ ଆଣି ତୁମକୁ ଦେଖାଇଥିଲେ । ତା'ପୂର୍ବରୁ ନନ୍ଦଙ୍କ ଘରେ ଶରଣ ପଶିଥିବା ବସୁଦେବଙ୍କ ପତ୍ନୀ ରୋହିଣୀ କୋଳରେ ଗୋଟିଏ ପୁତ୍ର ମଧ୍ୟ ଜାତ ହୋଇଥିବ । ସେହି ଦୁଇପୁତ୍ର ହେଉଛନ୍ତି—ଶ୍ରୀକୃଷ୍ଣ ଓ ବଳରାମ । ସେହି ଦୁହେଁ ତୁମର ସମସ୍ତ ଅସୁରମାନଙ୍କୁ ନିପାତ କରିଛନ୍ତି ।

ଏହା ଶୁଣିବା ମାତ୍ରେ କଂସ କ୍ରୋଧରେ ଅସ୍ଥିର ହୋଇ ବସୁଦେବ ଓ ଦେବକୀଙ୍କୁ ମାରିବାକୁ ଖଡ଼୍ଗ ଯେତେ ଅଗ୍ରସର ହୁଅନ୍ତେ ନାରଦ କହିଲେ—ତୁମେ ଦେବକୀ ବସୁଦେବଙ୍କୁ ପୁଣି ବନ୍ଦୀ କରିପାର; କିନ୍ତୁ ବଧ କଲେ କିଛି ଲାଭ ହେବ ନାହିଁ । ତୁମେ ସମସ୍ତ ଜଗତରେ ଜଣାଇଦିଅ ଯେ, ବସୁଦେବ ତୁମ ସହିତ ଛଳକପଟ କରିଥିବାରୁ, ତୁମେ ତାଙ୍କୁ କାରାଦଣ୍ଡ ଦେଉଛ ।

ନାରଦଙ୍କ ମୁଖରୁ ଉକ୍ତମ ପରାମର୍ଶ ଶୁଣି, କଂସ ଚାଣୂର, ମୁଷ୍ଟିକ, ଶଲ, ତୋଶଳ ଓ ହସ୍ତୀପ ଆଦି ସମସ୍ତ ମିତ୍ର ତଥା ବୀରମାନଙ୍କୁ ଡକାଇ ଆଣି କହିଲା—ହେ ବୀରଗଣ, ମୁଁ ଏବେ ମହାବିପଦରେ ପଡ଼ିଛି । ରାତିରେ ଅନେକ ପ୍ରକାର ଅଶୁଭ ସ୍ୱପ୍ନ ଦେଖୁଛି । ସେ ଅଶୁଭ ସ୍ୱପ୍ନ ମଧ୍ୟରେ ଉଲଗ୍ନ ନାରୀ, ପାଶହସ୍ତ ଯମରାଜ, ମୁକୁଳିତ କେଶା ଚଣ୍ଡାଳୀ, ବିବାହ ଶୋଭାଯାତ୍ରା ତଥା ରକ୍ତବାନ୍ତି କରୁଥିବା ବ୍ୟକ୍ତି ଆଦି ପ୍ରଧାନ । ତା' ବ୍ୟତୀତ ଆକାଶରୁ ଉଲ୍‌କାପାତ, ଭୂକମ୍ପ ଓ ରକ୍ତବୃଷ୍ଟି ଆଦି ଘଟଣାମାନ ମୋ' ରାଜ୍ୟରେ ନିତ୍ୟପ୍ରତି ଦେଖା ଯାଉଛି ଏହା ନିଶ୍ଚିତ ଭାବରେ ଅନିଷ୍ଟର ସୂଚନା ଦିଏ ।

କଂସର ବ୍ୟାକୁଳତା ଦେଖି ଦୁର୍ଦ୍ଦାନ୍ତ ରାକ୍ଷସମାନେ ନୀରବ ହୋଇଗଲେ । ପରକ୍ଷଣରେ କଂସର ପୁରୋହିତ ତଥା ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର ସତ୍ୟକ ବ୍ରାହ୍ମଣ କହିଲା—ମହାରାଜ, ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ମନ୍ତ୍ରାନୁଷ୍ଠାନ ବଳରେ ସମସ୍ତ ପ୍ରକାର ଅଶୁଭ ଶାନ୍ତ କରି ଦେବି । ଆପଣ ଭଗବାନ୍ ରୁଦ୍ରଙ୍କ ଅନୁଗ୍ରହ ପାଇବା ପାଇଁ 'ଧନୁର୍ଯଜ୍ଞ' ଆରମ୍ଭ କରନ୍ତୁ । ଏହା ଫଳରେ ରୁଦ୍ରଦେବ ତୁଷ୍ଟ ହୋଇ ଆପଣଙ୍କୁ ଅଶେଷ ଶୁଭଫଳ ପ୍ରଦାନ କରିବେ । ଯଜ୍ଞ ନିର୍ବିଘ୍ନରେ ସମ୍ପୂର୍ଣ୍ଣ ହେବା ମାତ୍ରେ, ସ୍ୱୟଂ ଶିବ ଆପଣଙ୍କ ସମ୍ମୁଖରେ ଆବିର୍ଭାବ ହୋଇ, ଜରା ମରଣ ରହିତ ବର ପ୍ରଦାନ କରିବେ । ଏ ପ୍ରକାର ଧନୁର୍ଯଜ୍ଞ ପୂର୍ବେ ବାଣାସୁର, ନନ୍ଦୀ ଓ ପରଶୁରାମ କରି ଶୁଭଫଳ ପ୍ରାପ୍ତ ହୋଇଥିଲେ । ଆପଣଙ୍କ ନିକଟରେ ଯେଉଁ ବିଶାଳ ଧନୁଟି ରହିଛି, ତା'ର ଶକ୍ତି ଅମୋଘ । ଏହା ଫଳରେ ଆପଣ ଜରାମରଣଜୟୀ ହୋଇ ଚିରକାଳ ସୁଖ ଭୋଗ କରିବେ ।

କଂସ ଏହା ଶୁଣିବା ମାତ୍ରେ ଶିବଚତୁର୍ଦ୍ଦଶୀ ତିଥିରେ ଯଜ୍ଞ ଆରମ୍ଭ କରିବା ଲାଗି ଦିନ ସ୍ଥିର କରି, ସେହି ଅବସରରେ ଛଳେ ବଳେ କୌଶଳେ ରାମକୃଷ୍ଣଙ୍କୁ ମଥୁରା ଅଣାଇ ବଧ କରିବାକୁ ମନେ ମନେ ନିଷ୍ପତ୍ତି କଲା ।

## ଛପ୍‌ପୟ

ସୁନି ଅତି କୋପେଂ କଂସ ତୀକ୍ଷ୍ଣ କରବାଲ ନିକାରୀ ।
କାଟୁଁ ସିର ବସୁଦେବ ଛଲୀକୋ ଦାତ ବଗାରୀ ॥
ନାରଦ ରୋକେ ତଉ କୌନ୍ଦ ପତ୍ନୀ ସଙ୍ଗ କୟୌ ।
ଷଲ, ତୋଶଲ, ଚାଣୂର ଟେର ସବ ମନ୍ତ୍ରୀ ଲିୟୌ ॥
କହେ କଂସ—ସବ ସଭାସଦ୍, ସୁନହୁ ଆଜ ନାରଦ କହତ ।
ମମ ରିପୁ ବୃନ୍ଦାବନ ବସତ, ରାମକୃଷ୍ଣ ବସୁଦେବ—ସୁତ ॥

# କଂସର ଧନୁର୍ଯଜ୍ଞ ଆୟୋଜନ

ଆରଭ୍ୟତାଂ ଧନୁର୍ଯାଗଶ୍ଚତୁର୍ଦ୍ଦଶ୍ୟାଂ ଯଥାବିଧି ।
ବିଶସନ୍ତୁ ପଶୂନ୍ ମେଧ୍ୟାନ୍ ଭୂତରାଜାୟ ମୀଢ଼ୁଷେ ॥

(ଭା ୧୦ସ୍କ । ୩୬ଅ । ୨୬ଶ୍ଳୋ)

### ଛପ୍‌ପୟ

ଧନୁର୍ଯାଗ ଇକ କରେ ଭୂତପତ କୁଁ ଅରାଧୌ ।
କୈସେ ମମରିପୁ ମରଇଁ କାଜ ମିଲ-ଜୁଲ ସବ ସାଧୌ ॥
ଦ୍ୱନ୍ଦ୍ୱଯୁଦ୍ଧ ନର କରହୁଁ ବିକଟ ଦଙ୍ଗଲ କରବାଓ ।
କବେ ନିମନ୍ତ୍ରିତ ସବନ ରାମ ଅରୁ ଶ୍ୟାମ ବୁଲାଓ ॥
ଦୋଉ ଭୈୟା ଅତି ବଲୀ, ବଲ ତିନକେ ତନମହଁ ଅମିତ ।
ଗାୟ ଚରାଓଁ ପୟ ପିୟେଁ, ମଖନ ମିଶ୍ରୀ ଖାୟଁ ନିତ ॥

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍, ଶିବ ଚତୁର୍ଦ୍ଦଶୀ ଦିନ ଧନୁର୍ଯାଗ ବିଧି ବିଧାନର ସହିତ ଆରମ୍ଭ କରିବା ନିମିତ୍ତ କଂସ ତା'ର ସେବକଙ୍କୁ ଆଦେଶ ଦେଲା । ସେ ଆହୁରି ମଧ୍ୟ କହିଲା—ଯଜ୍ଞର ପୂର୍ତ୍ତି ପାଇଁ ତୁ ଭୂତରାଜ ଭୂତପତିଙ୍କ ଉଦ୍ଦେଶ୍ୟରେ ପବିତ୍ର ମାଂସର ବଳି ବ୍ୟବସ୍ଥା କର ।

ଯେଉଁମାନେ କୌଣସି କାମନା କରି ଦେବପୂଜନ କରନ୍ତି, ଯଦି ତାହା ବିଧି ବିଧାନ ପ୍ରକାରରେ ସମାହିତ ହୁଏ, ତେବେ ଯଜମାନର ଅଭିଳାଷ ପୂର୍ତ୍ତି ହୋଇଥାଏ, କିନ୍ତୁ ଦମ୍ଭ, ଅଭିମାନ ଓ ଅହଙ୍କାର ସହିତ ପୂଜା କରାଗଲେ, ସେ କାମନା ପୂରଣ ହେବା ତ ଦୂରର କଥା, ତା' ଫଳରେ ବିପରୀତ ଫଳ ଆସିଯାଏ । ଆଉ ମଧ୍ୟ ସେହି ପୂଜା-ଅର୍ଚ୍ଚନାର ଅନ୍ତରାଳରେ ଯଦି ଯଜମାନ ପାପବାସନାରେ ଶିକାର ହୁଏ, ତେବେ ସେ ପ୍ରକାର ଉପାସନା ତା'ର ମୃତ୍ୟୁର କାରଣ ମଧ୍ୟ ହୋଇଥାଏ । କାରଣ ଯେଉଁ ଦେବୀ-ଦେବତାଙ୍କ ଉପାସନା କରାଯାଏ, ସେ ନିଶ୍ଚିତ ଭାବରେ ଯଜମାନର ମନୋଭାବକୁ ଭଲ ଭାବରେ ଅବଗତ ହୋଇଥା'ନ୍ତି; କିନ୍ତୁ ଦୁଷ୍ଟପ୍ରାଣୀ ଛଳ କପଟରେ ସମ୍ପୂର୍ଣ୍ଣ ଅନ୍ଧ ହୋଇଯାଇ ବନ୍ଧୁ, ଇଷ୍ଟ, ମିତ୍ର, ଏପରିକି, ପରମାତ୍ମାଙ୍କ ସହିତ ମଧ୍ୟ ସେହିପରି କପଟପୂର୍ଣ୍ଣ ବ୍ୟବହାର କରିଥାଏ । ସେ ଭାବେ, ପୂଜା-ଅର୍ଚ୍ଚନା ମାଧ୍ୟମରେ ମଧ୍ୟ ଦେବତାଙ୍କୁ ଠକେଇ ଦିଆଯାଇ

ପାରେ; କିନ୍ତୁ ପରମେଶ୍ୱରଙ୍କୁ ଠକାଇ ଦେବାର ଦୁଃସାହସ କେବଳ ଦୁରାତ୍ମା କରିଥାଏ । ଘଟଘଟ ନିବାସୀ ପରମାତ୍ମା ଛଳକପଟ ଆଚରଣକାରୀଙ୍କୁ ସମୁଚିତ ଫଳ ଦେଇଥା'ନ୍ତି ଏବଂ ଶାନ୍ତ ସ୍ୱଭାବର ବ୍ୟକ୍ତିମାନଙ୍କୁ ମଧ୍ୟ ସେ ସରଳଭାବରେ ଦର୍ଶନ ଦେଇ ତାହାର ଅଭୀଷ୍ଟ ପୂରଣ କରିଥା'ନ୍ତି । ତେଣୁ ତାଙ୍କୁ ଯେ ଯେଉଁଭାବରେ ଉପାସନା କରେ, ତା'ପାଇଁ ସେପରି ଫଳ ଶୁଆ ହୋଇଥାଏ । ସେଇଥିପାଇଁ କଥାରେ ଅଛି—

"ଉଚ୍ଚମନା ହଁଚେ ଅମୃତ ଲଭଇ ନୀଚମନା ଲଭେ ବିଷ ।"

ସୂତ ମୁନି କହିଲେ—"ହେ ମୁନିଗଣ, ଶୁକାଚାର୍ଯ୍ୟଙ୍କ ଶିଷ୍ୟ ମହର୍ଷି ସତ୍ୟକ କଂସକୁ ଯେତେବେଳେ 'ଧନୁର୍ଯାଗ' ସମ୍ବନ୍ଧରେ ଉପଦେଶ ଦେଲେ, ସେ ମଧ୍ୟ ଆନନ୍ଦରେ ତାକୁ ଗ୍ରହଣ କରି ନେଲା । ତେଣୁ ସେ ଧନୁର୍ଯାଗ ଆରମ୍ଭ କରିବା ପାଇଁ ପାତ୍ର ମନ୍ତ୍ରୀଙ୍କୁ ଆଦେଶ ଦେବା ସଙ୍ଗେ ସଙ୍ଗେ ଅସୁର ମଧ୍ୟ କହିଲା—ଦେଖ, ଧନୁଯାଗ ସହିତ ଆହୁରି କେତେକ ମନୋରଞ୍ଜକ କାର୍ଯ୍ୟକ୍ରମର ଆୟୋଜନ କର । ଯେଉଁ କାର୍ଯ୍ୟକ୍ରମ ଦେଖି ନଗରର ପ୍ରଜାଗଣ ଆତ୍ମବିଭୋର ହୋଇ ଉଠି ମୋତେ ପ୍ରଶଂସା କରିବେ ।

ଏହା ଶୁଣିବାମାତ୍ରେ ତୋଷାମଦକାରୀ ମଲ୍ଲଯୋଦ୍ଧାଗଣ ଉଲ୍ଲସିତ ହୋଇ ମଲ୍ଲଯୁଦ୍ଧ, ଦ୍ୱନ୍ଦ୍ୱ ଯୁଦ୍ଧ, ଆଦିର ଆୟୋଜନ ହେବା ଉଚିତ ବୋଲି ମତ ଦେଲେ ।

ଏହାଶୁଣି ଦୁରାତ୍ମା କଂସ ପ୍ରସନ୍ନତା ପ୍ରକଟ କରି କହିଲା—ତୁମମାନଙ୍କର ପ୍ରସ୍ତାବ ଉତ୍ତମ । ଆଜିଠାରୁ ତୁମେମାନେ ଯଜ୍ଞର ଆୟୋଜନ ସହିତ ମଲ୍ଲଯୁଦ୍ଧର ବ୍ୟବସ୍ଥା କର । ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ନରମ ନରମ ମାଟି ପକାଇ ଆଖଡ଼ାଶାଳ ପ୍ରସ୍ତୁତ କର । ଆଖଡ଼ା ଶାଳର ଚାରିପଟେ ଲୋକମାନଙ୍କ ବସିବା ପାଇଁ ମଞ୍ଚ ପ୍ରସ୍ତୁତ କର । ଏହି ମଞ୍ଚ ନିର୍ମାଣ ବେଳେ ସବୁ ଶ୍ରେଣୀର ଲୋକମାନଙ୍କ ପାଇଁ ଯୋଗ୍ୟତା ଅନୁସାରେ, ବସିବା ବ୍ୟବସ୍ଥା କରାଯିବା ଉଚିତ । ବିଶେଷତଃ ସ୍ତ୍ରୀଲୋକମାନଙ୍କ ବସିବା ସ୍ଥାନରେ ଉତ୍ତମ ସୂକ୍ଷ୍ମ ପରଦାର ବ୍ୟବସ୍ଥା ହେବା ଆବଶ୍ୟକ । ଯାହାଫଳରେ ସେମାନେ ସମସ୍ତଙ୍କୁ ଦେଖିପାରିବେ, ଅଥଚ ତାଙ୍କୁ କେହି ଦେଖିପାରିବେ ନାହିଁ । ଏହା ବ୍ୟତୀତ ବ୍ରଜପୁରରେ ଯେତେ ପ୍ରସିଦ୍ଧ ମଲ୍ଲ ଅଛନ୍ତି, ସେମାନଙ୍କୁ ମଧ୍ୟ ମଲ୍ଲ—ବିଦ୍ୟାର କୌଶଳ ଦେଖାଇବା ପାଇଁ ଆମନ୍ତ୍ରଣ କରାଯାଉ ।

କଂସର ଆଦେଶ ଶୁଣିବା ମାତ୍ରେ ତୋଷାମଦକାରୀମାନେ ଉତ୍ସାହିତ ହୋଇ କହିଲେ—"ମହାରାଜ, ରାମକୃଷ୍ଣ ଦୁ'ଭାଇ ପରା ବଡ଼ ମାଲଯୋଦ୍ଧା ରୂପେ ଆମ ବୀରମାନଙ୍କୁ ବଧ କରିଛନ୍ତି, ସେ ଦୁଇଜଣଙ୍କୁ ଆମେ ମଲ୍ଲପ୍ରତିଯୋଗିତାକୁ ଡକାଇଲେ କପରି ହୁଅନ୍ତା ? ଉଭୟପକ୍ଷର କେହି ଜଣେ ବିଶ୍ୱସ୍ତ ଲୋକକୁ ପଠାଇ, ସେ ଦୁ'ଭାଇଙ୍କ ନିମନ୍ତ୍ରଣ ଜଣାଇ, ରାଜଧାନୀକୁ ଘେନି ଆସନ୍ତୁ ।

କଂସର ମନକୁ ଏ କଥା ବେଶ୍ ପାଇଲା । ସେ ମହର୍ଷି ସତ୍ୟକଙ୍କୁ ଗୃହିଁ ଗୋପପୁରକୁ ଯିବାଲାଗି ଆଦେଶ ଦେଲା । କଂସର ଆଦେଶ ଶୁଣି ସେ କହିଲେ—ମହାରାଜ,

ଆପଣଙ୍କ ଆଜ୍ଞାପାଳନ କରିବା ମୋର ଧର୍ମ । ତଥାପି ମୋର ନିବେଦନ, ଏ' କାର୍ଯ୍ୟ ପାଇଁ ବସୁଦେବ ହିଁ ଏକମାତ୍ର ଯୋଗ୍ୟ ବ୍ୟକ୍ତି । କାରଣ ସେ ନନ୍ଦଙ୍କର ମିତ୍ର ଏବଂ ଆମ ଯଦୁକୁଳରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ଆପଣଙ୍କ ଘନିଷ୍ଠ ବନ୍ଧୁ ଭାବରେ ସେ ରାଜପ୍ରତିନିଧି ହୋଇ ଗୋପପୁର ଗଲେ, ସକଳ କାର୍ଯ୍ୟ ସୁନ୍ଦର ରୂପେ ସମ୍ପନ୍ନ ହେବ ଏବଂ ଆପଣଙ୍କ ସମସ୍ତ ଯୋଜନା ମଧ୍ୟ କାର୍ଯ୍ୟକାରୀ ହେବାରେ ବାଧା ଉପୁଜିବ ନାହିଁ ।

କଂସ ସଙ୍ଗେ ସଙ୍ଗେ ବସୁଦେବଙ୍କୁ ଡକାଇ ଆଣି ସିଂହାସନରେ ବସାଇ ଆଦର ଅଭ୍ୟର୍ଥନା ଜଣାଇ କହିଲ—ବନ୍ଧୁବର ! ଆପଣ ମୋର ଗୋଟିଏ ଅନୁରୋଧ ରକ୍ଷା କରନ୍ତୁ । ମୁଁ ରାଜଧାନୀରେ ଗୋଟିଏ ଅଭୁତ ପୂର୍ବ ଧନୁଯାତ୍ରା ଆରମ୍ଭ କରୁଛି । ଆପଣ ମୋ' ରଥ ନେଇ ଗୋପପୁର ଯାଆନ୍ତୁ । ନନ୍ଦରାଜା ଆପଣଙ୍କର ମିତ୍ର, ସେ ଆପଣଙ୍କ ଅନୁରୋଧ ଏଡ଼ାଇ ଦେଇ ପାରିବେ ନାହିଁ । ଆପଣ ତାଙ୍କୁ ନିମନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ତାଙ୍କ ପୁତ୍ର ରାମ କୃଷ୍ଣଙ୍କୁ ରଥରେ ବସାଇ ମଥୁରାକୁ ଘେନି ଆସିବେ । ଏହି ଯଜ୍ଞ ପାଇଁ ସମସ୍ତ ପ୍ରତାପୀ ରାଜା ଓ ବୀରମାନଙ୍କୁ ମୁଁ ନିମନ୍ତ୍ରଣ ପଠାଇ ଦେଲିଣି । ସମସ୍ତେ ଆସି ଏହା ମଧ୍ୟରେ ଉପସ୍ଥିତ ହୋଇ ଯିବେ । ଏମାନଙ୍କ ବ୍ୟତୀତ ଯାଜ୍ଞିକ ବ୍ରାହ୍ମଣ ଓ ମୁନିଋଷିମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଛି ଏବଂ ଆପଣ ଆଉ ଯାହାକୁ ଉପଯୁକ୍ତ ମନେ କରିବେ, ସମସ୍ତଙ୍କୁ ନିମନ୍ତ୍ରଣ କରି ଆସିବେ ।

ଏ କଥା ଶୁଣିବାମାତ୍ରେ ବସୁଦେବଙ୍କ ମୁଖମଣ୍ଡଳରେ ଦୁଃଖର ଛାୟା ଘୋଟିଗଲା । ସେ ଭଲ ଭାବରେ ଜାଣିଥିଲେ—ଏ ଧନୁଯାତ୍ରା କେବଳ ଗୋଟିଏ ଛଳନା । ପ୍ରକୃତରେ କଂସ ମୋ' ପୁତ୍ର ଦୁହିଙ୍କୁ ନିଧନ କରିବା ଲାଗି ଗୋଟିଏ ସୁଚକ୍ରାନ୍ତ ଯୋଜନା କରିଛି । ମୁଁ ଯଦି ଏହାର ଚକ୍ରାନ୍ତରେ ଭାଗ ନେଇ ରାମ-କୃଷ୍ଣଙ୍କୁ ଏଠାକୁ ଘେନି ଆସେ, ଲୋକେ ମୋତେ କ'ଣ କହିବେ ? ମୁଁ ବାପା ହୋଇ ପୁତ୍ର-ନିଧନର କାରଣ ହେବି କପରି ?

ଏହା ଚିନ୍ତାକରି ବସୁଦେବ 'ଶଠେ ଶାଠ୍ୟଂ ସମାଚରେତ୍' ନୀତିରେ କହିଲେ—"ମହାରାଜ, ମୋ' ବିଚାରରେ ଆପଣଙ୍କର ଏତେ ବଡ଼ ସାଧୁ କାର୍ଯ୍ୟରେ ସେ ଦୁଇଟା ଦୁଷ୍ଟବାଳକଙ୍କୁ ଅଣେଇବା ଉଚିତ ହେବ ନାହିଁ । ଆପଣ ଜାଣିଛନ୍ତି—ସେ ଦୁଇଜଣ ବାଳକ ନିତାନ୍ତ ଅବାଧ୍ୟ ତଥା ଚପଳ । ଏପରି ଏକ ଆନନ୍ଦ ମୁଖର ଉତ୍ସବରେ ସେ ଦୁହିଁଙ୍କି ରାଜଧାନୀକୁ ଅଣାଇଲେ ମହାନ୍ ଅନର୍ଥ ଘଟିବ । ଆପଣ ନନ୍ଦରାଜଙ୍କୁ ଡକାଇ ପାରନ୍ତି । ଆପଣ ରାମକୃଷ୍ଣଙ୍କୁ ଅଣାଇବାର ଚିନ୍ତା ମନରୁ ଦୂରକରି ଦିଅନ୍ତୁ । ମୁଁ ମଧ୍ୟ ଜାଣିଶୁଣି ମହାରାଜାଙ୍କର ଅପକାର ହେଉଥିବା କାର୍ଯ୍ୟ କରି ପାରିବି ନାହିଁ । ଆପଣ ଯଦି ନିତାନ୍ତ ଚାହୁଁ ଆଅନ୍ତି, ତେବେ ଏ କାର୍ଯ୍ୟ ପାଇଁ ଅଉ କୌଣସି ଲୋକକୁ ପଠାନ୍ତୁ, ମୁଁ ଯାଇ ପାରିବି ନାହିଁ ।"

କଂସ ବସୁଦେବଙ୍କର ମନୋଭାବ ଉପଲବ୍ଧିରେ ଜାଣିପାରି ମନେମନେ କ୍ରୋଧରେ ଜଳିଉଠିଲା । ସେ ବସୁଦେବଙ୍କୁ ତାଗିଦ୍ କରି ପରି କହିଲା—ଆଉ କେହି ନୁହେଁ, ତୁମକୁ ହିଁ ଗୋପପୁରକୁ ଯିବାକୁ ପଡ଼ିବ !

କଂସର ଆଦେଶକୁ ପ୍ରତ୍ୟାଖ୍ୟାନ କରି ବସୁଦେବ କହିଲେ—"ମହାରାଜ, ଆପଣଙ୍କ ଏହି ଆଦେଶକୁ ମୁଁ ପାଳନ କରି ପାରିବି ନାହିଁ !" ଏଥିଲାଗି ଆପଣ ମୋତେ ଯାହା ଦଣ୍ଡଦେବେ, ସେଥିପ୍ରତି ମୋର ଆପତ୍ତି ନାହିଁ ।

କଂସକୁ ଏ ପ୍ରକାର କଠୋର ଉତ୍ତର ଦେଇ ବସୁଦେବ ଆସନ ତ୍ୟାଗ କରି ସେଠାରୁ ଚାଲିଗଲେ । ବସୁଦେବଙ୍କ ଆଚରଣରେ କଂସ କ୍ରୋଧରେ ଅଗ୍ନିଶର୍ମା ହୋଇଗଲା । ସେ ତତ୍‌କ୍ଷଣାତ୍ ବସୁଦେବଙ୍କ ପଥରୋଧ କରି ତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ ହେବାମାତ୍ରେ, କଂସର ପିତା ଉଗ୍ରସେନ ଓ ତାଙ୍କ ଝିଅ ଦେବକୀ ଦୁହେଁ ବିନୀତ ପ୍ରାର୍ଥନା କରି କହିଲେ—"କଂସ ! ତୋ' ଅନୁଗ୍ରହରୁ ଆମେ ଦୁ' ଭାଇ ବନ୍ଦୀ ହୋଇ ଏଠାରେ ଆତ୍ମଗ୍ଲାନିର ସହିତ କାଳଯାପନ କରୁଛୁ । ତଥାପି ଆମେ ତୋର ହିତାକାଙ୍କ୍ଷୀ ଭାବରେ କହୁଛୁ—ତୁ ଏପରି କ୍ରୂରକର୍ମ କରି ନିଜକୁ କଳଙ୍କିତ କରନା । ବସୁଦେବ ତୋର ଭଉଣୋଇ । ପୂର୍ବରୁ ତୁ ତାଙ୍କର ଯେତେ ଅପକାର କରିଛୁ, ସେଥିପାଇଁ ତୋତେ ମଥୁରା ରାଜ୍ୟର ଲୋକେ ନିନ୍ଦା କରୁଛନ୍ତି । ତୁ ଯଦି ବର୍ତ୍ତମାନ ବସୁଦେବଙ୍କୁ ହତ୍ୟା କରୁ, ତେବେ ତୋ' କୁକାର୍ଯ୍ୟର ଡିଣ୍ଡିମ ସମଗ୍ର ସଂସାରରେ ବାଜି ଉଠିବ । ତୁ ସେ ନିନ୍ଦାରେ ମୁଣ୍ଡଟେକି ଚାଲି ପାରିବୁ ନାହିଁ ।"

ସେ ଦୁହିଁଙ୍କ କଥା ଶୁଣି କଂସ ବସୁଦେବଙ୍କୁ ବଧ କଲା ନାହିଁ ସତ; କିନ୍ତୁ ସେ ଘରେ ପତିବ୍ରତାକାଂକ୍ଷିଣୀ ଦେବକୀ ସହିତ ତାଙ୍କୁ ବନ୍ଦୀ କରାଇ ପୁଣି କାରାଗାରକୁ ପଠାଇଦେଲା ।

ଏହା ମଧ୍ୟରେ କଂସର ଧନୁଯାତ୍ରା ଖୁବ୍ ଆଡ଼ମ୍ବର ସହକାରେ ଆୟୋଜିତ ହେବାକୁ ଲାଗିଲା । ସମସ୍ତ ପ୍ରକାର ଆୟୋଜନ ଲାଗି ବିଭିନ୍ନ ଲୋକମାନେ ଦାୟିତ୍ୱ ଗ୍ରହଣ କରିଥିଲେ । ତେଣୁ ରାଜଧାନୀରେ ସେଇ କେତେଦିନ ଖୁବ୍ ଧୂମ୍‌ଧାମ୍ ଚାଲିଲା । କଂସ ତା'ର ମିତ୍ର ରାଜାମାନଙ୍କୁ ଆଗ୍ରହରେ ନିମନ୍ତ୍ରଣ କରିଥିଲା । ତା' ବ୍ୟତୀତ ସେ ନିଜର ଅସଲ ସ୍ୱରୂପ ଗୋପନ କରି, ଦେଶବିଦେଶର ବେଦବିତ୍ ବ୍ରାହ୍ମଣମାନଙ୍କୁ ଅଣାଇ ଯଜ୍ଞ କାର୍ଯ୍ୟ ସୁଚାରୁରୂପେ ଚଳାଇବାର ଆୟୋଜନ କଲା ।

ବସୁଦେବଙ୍କୁ ହଠାତ୍ କାରାଦଣ୍ଡରେ ଦଣ୍ଡିତ କରାଯାଇ ଥିବାରୁ ନଗରବାସୀଙ୍କ ମନରେ ଆତଙ୍କ ଖେଳି ଯାଇଥିଲା; କିନ୍ତୁ କେହି କଣେହେଲେ ପ୍ରାଣ ଭୟରେ ତୁଣ୍ଡ ଖୋଲିଲେ ନାହିଁ ।

ପରେ କଂସ ଏକାନ୍ତରେ ତା'ର ମଲ୍ଲବୀରମାନଙ୍କୁ ଡକାଇ ଆଣି କହିଲେ— "ହେ ବୀରଗଣ ! ଦେଖ, ତୁମମାନଙ୍କ ଆଗରେ ମୁଁ ମୋର ଗୋଟିଏ ମନକଥା ଖୋଲିକରି କହୁଛି । ଗୋପପୁରର ନନ୍ଦରାଜାଙ୍କ ଘରେ ଯେଉଁ ରାମ-କୃଷ୍ଣ ରହୁଛନ୍ତି, ସେ ଦୁହେଁ ପ୍ରକୃତରେ ହେଉଛନ୍ତି—ବସୁଦେବଙ୍କ ପୁତ୍ର । ସେ ବାଳକ ଦୁଇଜଣ ମୋର ପ୍ରଧାନ ଶତ୍ରୁ । ମୁଁ ତାଙ୍କୁ କୌଣସିମତେ ଧନୁଯାତ୍ରାକୁ ଆଣିବାକୁ ଚେଷ୍ଟା କରୁଛି । ତୁମେମାନେ ତାଙ୍କୁ କଳେବଳେ କୌଶଳେ ବଧ କରିବାକୁ ଚେଷ୍ଟା କରିବ । ମୁଁ ତୁମମାନଙ୍କୁ ଯଥେଷ୍ଟ ପୁରସ୍କାର ଦେବି ।

ମଲ୍ଲବୀରମାନେ ଗର୍ବରେ ଫୁଲିଉଠି କହିଲେ—"ମହାରାଜ, ଆପଣ ନିଶ୍ଚିନ୍ତ ହୋଇ ରହନ୍ତୁ । ଆମେମାନେ ନିଶ୍ଚିତ ଭାବରେ ବାଳକ ଦୁହିଙ୍କୁ ଯମପୁରକୁ ପଠାଇ ଦେବୁ ।"

ମଲ୍ଲମାନଙ୍କ କଥା ଶୁଣି କଂସ ହସ୍ତୀପକୁ ପାଖକୁ ଡକାଇ ଅତି ବିଶ୍ୱାସରେ କହିଲେ—"ତୁମେ ମୋର ଅତି ଆପଣାର ଲୋକ । ତେଣୁ ରାମ-କୃଷ୍ଣଙ୍କୁ ମାରିବାର ଦାୟିତ୍ୱ ଏକମାତ୍ର ତୁମର । ତୁମେ ସେଦିନ ରଙ୍ଗଭୂମିର ଦ୍ୱାରଦେଶରେ କୁବଳୟାପୀଡ଼ ହସ୍ତୀକୁ ଯଥେଷ୍ଟ ମଦ୍ୟପାନ କରାଇ ଛିଡ଼ା କରାଇଥିବ । ରାମ-କୃଷ୍ଣ ଦୁହେଁ ଦ୍ୱାର ଦେଶରେ ପହଞ୍ଚିବାକ୍ଷଣି, ତୁମେ ହସ୍ତୀକୁ ଏପରି ଭୂଲି ଦେବ ଯେ ସେ ଯେପରି ବାଳକ ଦୁହିଙ୍କୁ ସେହିଠାରେ ପାଦରେ ଚକଟି ଦେବ ।"

କଂସ ଏହିପରି ଭାବରେ ଯୋଜନା ପ୍ରସ୍ତୁତ କରିବା ପରେ ଅକ୍ରୂର ନାମକ ଯାଦବ ବଂଶର ଅନ୍ୟତମ ବୀରଙ୍କୁ ଡକାଇ ଆଣିଲେ । କଂସ ମନେ ମନେ ଭାବିଥିଲେ—ଅକ୍ରୂର ଯଦ୍ୟପି ମୋର ବିଶ୍ୱସ୍ତ ନୁହେଁ, ତଥାପି ଅତ୍ୟନ୍ତ ଚତୁର । ଏହାଙ୍କୁ ପଠାଇଲେ ନନ୍ଦରାଜା ବିଶ୍ୱାସ କରି, ନିଶ୍ଚୟ ତା' ପୁଅ ଦୁହିଙ୍କି ମଥୁରାକୁ ପଠାଇଦେବ ।"

## ଛପ୍‌ପୟ

"ଦଙ୍ଗଲ ଯୁଦ୍ଧକେଁ ରାମ-କୃଷ୍ଣ ଗୋପନ ସଙ୍ଗ ଆଓ୍ୱେଁ ।  
ଜୋ ଯେ ମାରେଁ ମଲ୍ଲ ପାରିତୋଷିକ ତେ ପଓ୍ୱେଁ ॥  
ପୁନ ହସ୍ତୀପତେଁ କହେ—ପୁତ୍ରନୋ ତୁମ ମମ ସାଥୀ ।  
ମତ୍ତ କୁବଳୟାପୀଡ଼ ଦ୍ୱାରପେ ରଖିୟୋ ହାଥୀ ॥  
ଆଓ୍ୱେଁ ଦୋଉ ବନ୍ଧୁ ଜବ, ତବ ହାଥୀ ଦୌଡ଼ାଇକେ ।  
ଦୀଜୋ ଦୋଉନ କୁଁ, କୁଚଲି ଅଙ୍କୁଶ ମାରି ରିସ୍ୟାଇକେ ॥"



# କଂସ ଓ ଅକ୍ରୂର

"ଗଚ୍ଛ ନନ୍ଦବ୍ରଜଂ ତତ୍ର ସୁତାବାନକଦୁନ୍ଦୁଭେଃ ।
ଆସାତେତ ତାବିହାନେନ୍ ରଥେ ନାନୟ ମା ଚରମ୍ ।"
(ଶ୍ରୀଭା ୧୦ସ୍କ. ୩୬ଅ. ୩୦ଶ୍ଳୋ)

## ଛପ୍‌ପୟ

ଯେଉଁ ସବକୁ ସମୁଝାଇ କଂସ ଅକ୍ରୂର ବୁଲାଯେ ।
କରନ୍ତେ ବହୁ ସମ୍ମାନ ପ୍ରେମତେ ପାସ ବଠାଯେ ॥
କହେ—ମିତ୍ର ! ତୁମ ସଦା ରହେ ହମରେ ହିତକାରୀ ।
ଅତ ସଜ୍ଜନ ହୋ ନହୀଁ ପ୍ରଶଂସା କରୁଁ ତୁହ୍ମାରୀ ॥
ଆଜ କାଜ ଗୁରୁତର ପରମ, ବୃନ୍ଦାବନ ମହଁ ଜାଇକେ ।
ରାମକୃଷ୍ଣ ବସୁଦେବ ସୁତ, ଲାଓ ରଥହେ ଲେଓ୍ୱାଇକେ ॥

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ପରୀକ୍ଷିତ ! କଂସ ଅକ୍ରୂରଙ୍କୁ ବୁଝାଇ ସ୍ନେହର ସହିତ କହିଲା—ହେ ସୌମ୍ୟ, ଆପଣ ବ୍ରଜପୁରକୁ ଗମନ କରନ୍ତୁ । ସେଠାରେ ବସୁଦେବଙ୍କର ଦୁଇପୁତ୍ର ରହୁଛନ୍ତି । ସେ ଦୁହିଁଙ୍କୁ ରଥରେ ବସାଇ ରାଜଧାନୀକୁ ଘେନି ଆସନ୍ତୁ । ଆପଣ ଆଉ ବିଳମ୍ବ ନ କରି ଏ କାର୍ଯ୍ୟ ଶୀଘ୍ର କରନ୍ତୁ ।"

ନୀଚ ଲୋକର କ୍ରୋଧ ଯେତେ ଭୟଙ୍କର ନୁହେଁ, ତା'ର ଖୋସାମଦ ତା'ଠାରୁ ଅତ୍ୟନ୍ତ ଭୟଙ୍କର ହୋଇଥାଏ । ସ୍ୱାର୍ଥ ସାଧନ ପାଇଁ ଦୁଷ୍ଟ ଲୋକମାନେ ସର୍ବଦା ସତର୍କ ଥାଆନ୍ତି । ସେମାନେ କୌଣସିମତେ ନିଜର କାର୍ଯ୍ୟ ସାଧନ ପାଇଁ ଚେଷ୍ଟା କରନ୍ତି । ଯେତେ ପ୍ରକାର ବସ୍ତୁ ଆବଶ୍ୟକ ପଡ଼େ, ସେମାନେ ପ୍ରୟୋଗ କରି, କାର୍ଯ୍ୟ ସାଧନ କରନ୍ତି, ଅବଶ୍ୟ ଯେଉଁମାନେ ତାଙ୍କ ଅଧୀନରେ ଥାଆନ୍ତି, ସେମାନେ ପ୍ରାଣ ଭୟରେ ତାଙ୍କ କଥା ମାନି ଯାଆନ୍ତି । ସେମାନେ ସ୍ନେହପୂର୍ଣ୍ଣ ଆଚରଣରେ କଥା ନ ମାନିଲେ, କ୍ରୋଧ ପ୍ରକାଶ କରି ତାଙ୍କଠାରୁ କାର୍ଯ୍ୟ ହାସଲ କରିବାରେ ଦୁଷ୍ଟ ଲୋକମାନେ ସର୍ବଦା ତତ୍ପର ରହନ୍ତି ।

ଲଙ୍କେଶ୍ୱର ରାବଣ ସୀତାହରଣ ପାଇଁ ଆୟୋଜନ କରି ଯେତେବେଳେ ମାରୀଚପୁରରେ ଉପସ୍ଥିତ ହେଲା, ସେତେବେଳେ ତା'ର ବିନୟ କହିଲେ ନ ସରେ । ରାବଣର ଅହେତୁକ ବିନୀତଭାବ ଲକ୍ଷ୍ୟ କରି ମାରୀଚ ମନେ ମନେ ରାବଣର ସ୍ୱାର୍ଥପୂର୍ଣ୍ଣ

କାର୍ଯ୍ୟ ସମ୍ପର୍କରେ ଅନୁମାନ କରିନେଲ । ରାବଣ ତାକୁ 'ସୁନାହରିଣ' ହେବା ପାଇଁ ପ୍ରସ୍ତାବ ଦେବାମାତ୍ରେ ଅବଶ୍ୟ ମାରୀଚ ତା'ର ବିରୋଧ କରିଥିଲା; କିନ୍ତୁ ଯେତେବେଳେ ରାବଣ ତାକୁ ହତ୍ୟା କରିବା ଲାଗି ଧମକ ଦେଲା, ସେ ମନେ ମନେ ଭାବିଲା—ଏ ଦୁରାତ୍ମା ହାତରେ ମରି ନର୍କକୁ ଯିବି କାହିଁକି ? ବରଂ ଶ୍ରୀରାମଚନ୍ଦ୍ରଙ୍କ ବାଣରେ ମରି ଏ ପାପମୟ ଜୀବନରୁ ମୁକ୍ତି ଲାଭ କରିବା ଶ୍ରେୟସ୍କର । ପରମାତ୍ମା ଶ୍ରୀରାମ ମୋ' ଅନ୍ତରର ବେଦନା ନିଶ୍ଚୟ ବୁଝି ପାରିବେ । ତେଣୁ ସେ ବାଧ୍ୟ ହୋଇ ରାବଣର ପ୍ରସ୍ତାବ ଅନୁସାରେ କନକ ମୃଗ ହୋଇ ଶ୍ରୀରାମଙ୍କ ଶରାଘାତରେ ପରମପଦ ଲାଭ କଲା ।

ସୂତମୁନି କହିଲେ—"ହେ ମୁନିଗଣ, ବସୁଦେବ ଓ ଦେବକୀଙ୍କୁ କାରାଗାରରେ ବନ୍ଦୀ କରିବା ପରେ କଂସ ମନେ ମନେ ଭାବିଲା—ଆଉ କାହାକୁ ପଠାଇ କାର୍ଯ୍ୟ ସାଧନ କରିବ ? ହଁ, କେଶୀ ନାମକ ଆଉଜଣେ ଅସୁର ଅଛି । ହୁଏତ ସେ କିଛି ହଟଚମଟ ଦେଖାଇ କାର୍ଯ୍ୟ କରିପାରେ ।

ହେ ମୁନିଗଣ ! ଏହା ଚିନ୍ତା କରି କଂସ କେଶୀନାମକ ଅସୁରକୁ ଗୋପପୁରକୁ ପଠାଇ ଦେଲା; କିନ୍ତୁ କେଶୀ ରାମ-କୃଷ୍ଣ ଦୁହିଙ୍କି ବଧ କରି ନିର୍ବିଘ୍ନରେ ମଥୁରାକୁ ଫେରି ଆସିବ ବୋଲି ତା'ର ବିଶ୍ୱାସ ହେଲା ନାହିଁ ।

ସୂତମୁନି କହିଲେ—"ହେ ଶୌନକାଦି ମୁନିଗଣ, କଂସ କେଶୀ ଅସୁରକୁ ଗୋପପୁରକୁ ପଠାଇ ଦେଲା । ସେ ଘୋଡ଼ାରୂପ ଧାରଣ କରି ଗୋପପୁରରେ ପ୍ରବେଶ କଲା; କିନ୍ତୁ ସେଥିକରେ କଂସର ମନବୋଧ ହେଲା ନାହିଁ । ଏ ସଂସାରରେ ଭୋଗଲାଳସାର ବଡ଼ ବୈଶିଷ୍ଟ୍ୟ ରହିଛି । ଯେତେ ଉପଭୋଗ କଲେ ମଧ୍ୟ ବିଳାସୀ ମନରେ ତୃପ୍ତି ଆସେ ନାହିଁ । ସେ ଅନନ୍ତ ଦୀର୍ଘକାଳ ପର୍ଯ୍ୟନ୍ତ ଦୀର୍ଘାୟୁ ହୋଇ ଭୋଗବାସନାରେ ବୁଡ଼ିରହିବା ପାଇଁ ଇଚ୍ଛାକରେ । ସେଥିପାଇଁ ସେ ନାନାପ୍ରକାର ଯୋଜନା ପ୍ରସ୍ତୁତ କରେ, ଅସମ୍ଭବକୁ ସମ୍ଭବ କରିବାରେ ଲାଗିପଡ଼େ । ଭୋଗବାସନାର ଏହାହିଁ ହେଉଛି ମହତ୍ତ୍ୱ ।

କଂସ କେଶୀକୁ ପଠାଇ ଦେଲା ସତ; କିନ୍ତୁ ସେତିକରେ ସେ ଶାନ୍ତି ପାଇପାରିଲା ନାହିଁ । କାରଣ ସେ ବେଶ୍ ଜାଣିଥିଲା—କେଶୀ କୌଣସିମତେ ଜୀବନ ଧରି ଗୋପପୁରରୁ ଫେରି ଆସିବ ନାହିଁ, ତଥାପି ସେ ନିଜର ଅଶାନ୍ତ ମନକୁ କୌଣସିମତେ ଶାନ୍ତ ଦେବାଲାଗି ଯୋଜନା ପରେ ଯୋଜନା କରିବାକୁ ଲାଗିଲା ଏବଂ ପରିଶେଷରେ ତା'ର ଦୃଷ୍ଟି ପଡ଼ିଲା ଯାଦବ ବଂଶୀୟ ଅକ୍ରୂର ଉପରେ ।

ସୂତମୁନି ପୁଣି କଂସର କ୍ରୂରତା ସମ୍ପର୍କରେ ଆଲୋଚନା କରିବାକୁ ଯାଇ କହିଲେ—"ହେ ମୁନିଗଣ, କଂସର ଅତ୍ୟାଚାର ଏତେ ପ୍ରଚଣ୍ଡ ହେଲା ଯେ, ଯଦୁ, ଭୋଜ ଓ ସାତ୍ୱତ ଆଦି ସାତବଂଶର ଲୋକମାନେ ଅସ୍ଥିର ହୋଇ ଉଠିଲେ । ସେମାନଙ୍କ ମଧ୍ୟରୁ ଅନେକ ଶାନ୍ତିପ୍ରିୟ ପରିବାର ମଥୁରା ରାଜ୍ୟରୁ ପଳାଇ ଯାଇ, ଅନ୍ୟାନ୍ୟ ରାଜ୍ୟରେ ଶରଣ

ପଶିଲେ । କାରଣ କଂସ ଆପଣା ବଂଶଧରମାନଙ୍କୁ ଉଲେ ହେଲେ ବିଶ୍ୱାସ କରୁ ନଥିଲା । ତେଣୁ କୃଷ୍ଣ ପ୍ରକୃତର ରାକ୍ଷସମାନଙ୍କୁ ଦୂରଦେଶରୁ ଅଣାଇ ଶାସନ କାର୍ଯ୍ୟରେ ନିଯୁକ୍ତ କରିଥିଲା । ତାହା ଲକ୍ଷ୍ୟ କରି ଯାଦବମାନଙ୍କ ମଧ୍ୟରୁ ଅନେକ ବୀର ରାଜକାର୍ଯ୍ୟରୁ ସ୍ୱେଚ୍ଛାରେ ଅବସର ଗ୍ରହଣ କରି, ଅନ୍ୟତ୍ର ପଳାଇ ଯାଇ ଆତ୍ମଗୋପନ କରି ରହିଥିଲେ; କିନ୍ତୁ ସମସ୍ତେ ଗ୍ଲସିବା ପରେ ମଧ୍ୟ ସେ ଅକ୍ରୂର ନିଜର ତ୍ୟାଗପତ୍ର ଦେଇ ନଥିଲେ । ମଥୁରା ରାଜ୍ୟରେ ଧର୍ମାଧ୍ୟକ୍ଷ ପଦରେ ନିଯୁକ୍ତ ଥିଲେ । ବଂଶ ପରମ୍ପରା କ୍ରମରେ ସେ ଏହି ପଦ ପାଇଥିଲେ । କଂସର କାର୍ଯ୍ୟକଳାପରେ ନିଜର ମନୋଭାବ ଅକ୍ରୂର ପ୍ରକାଶ ନକରି, ରାଜପଦରେ ଅଧିଷ୍ଠିତ ହୋଇ ରହିଥିଲେ । କଂସ ମଧ୍ୟ ଅକ୍ରୂରଙ୍କୁ ବିଶ୍ୱାସ କରୁଥିଲା ।

କଂଶ ଅକ୍ରୂରଙ୍କୁ ଗୋପପୁରକୁ ପଠାଇବା ଲାଗି ରାଜପୁରକୁ ଡକାଇ ଆଣିଲା ଏବଂ ନାନାପ୍ରକାର ବିନୟପୂର୍ଣ୍ଣ ବ୍ୟବହାର ଦେଖାଇ ତାଙ୍କୁ ନିଜ ପାଖରେ ଆସି ବସିବା ଲାଗି ଅନୁରୋଧ କଲା ।

ଅକ୍ରୂର କଂସର ଅହେତୁକ ନମ୍ରତାରେ ଭାସି ନ ଯାଇ ବିନୀତ ଭାବରେ କହିଲେ—'ମହାରାଜ, ଅଷ୍ଟଲୋକପାଳଙ୍କ ଅଂଶ ଗ୍ରହଣ କରି ରାଜା ସିଂହାସନ ଆରୋହଣ କରିଥାଏ । ସେ ସାଧାରଣ ଲୋକଙ୍କ ସହିତ ଆଦୌ ସମାନ ନୁହନ୍ତି । ତେଣୁ ପ୍ରଜାମାନେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରନ୍ତି । ସେ ଦୃଷ୍ଟିରୁ ରାଜାଙ୍କ ସହିତ ସମାନ ଆସନରେ ବସିବାର ଅଧିକାର ସାଧାରଣ ପ୍ରଜାଙ୍କର ନାହିଁ ।

କଂସ ଅକ୍ରୂର ତୋଷାମଦ କରି କହିଲା—"ଅକ୍ରୂର ମହୋଦୟ ! ତୁମେ ଏପରି କ'ଣ କହୁଛ ? ଯଦୁବଂଶର ପ୍ରତ୍ୟେକ ବୀର ରାଜସିଂହାସନ ପାଇଁ ଯୋଗ୍ୟ ଅଟନ୍ତି ।"

ଏହା କହି କଂସ ଅକ୍ରୂରଙ୍କୁ ସମ୍ମାନ ସହକାରେ ନେଇ ନିଜ ପାଖରେ ବସାଇ କହିଲା—ମହାଶୟ, ଆପଣ ଜାଣନ୍ତି, ମୋ' ପରାକ୍ରମରେ ଈର୍ଷାନ୍ୱିତ ହୋଇ ଯଦୁବଂଶୀମାନେ ମୋ' ସହିତ ଶତ୍ରୁତା ଆଚରଣ କରୁଛନ୍ତି । କେତେକ ଏଠାରୁ ପଳାଇ ଯାଇ ଅନ୍ୟ ରାଜ୍ୟରେ ରହି ମୋ' ବିରୁଦ୍ଧରେ ଷଡ଼ଯନ୍ତ୍ର ଚଳାଉଛନ୍ତି; କିନ୍ତୁ ଆପଣ ମୋ' ହିତରେ ସଦା ତତ୍ପର ଥିବା ମୁଁ ଭଲଭାବରେ ଜାଣେ । ତେଣୁ ମୁଁ ଆପଣଙ୍କୁ ଆଜି ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ନିଯୁକ୍ତ କରିବାଲାଗି ମନସ୍ଥ କରିଛି ।

ଅକ୍ରୂର କଂସ କଥାରେ ରାଜି ହୋଇସିବାମାତ୍ରେ ଭୋଜପତି କଂସ କହିଲା— "ଅକ୍ରୂର, ଆପଣ ଜାଣିଥିବେ, ବସୁଦେବଙ୍କର ଦୁଇପୁତ୍ର ଗୋପପୁରରେ ନନ୍ଦ ଘରେ ରହି ମୋର ଅନିଷ୍ଟ କରୁଛନ୍ତି······।"

କଂସ ମୁହଁରୁ କଥା ଛଡ଼ାଇ ନେଇ ଅକ୍ରୂର କିଛି ନ ଜାଣିଲା ପରି ପଚାରିଲେ— "ମହାରାଜ, ଆପଣ ଏ କ'ଣ କହୁଛନ୍ତି ? ବସୁଦେବଙ୍କ ପୁତ୍ରମାନଙ୍କୁ ଆପଣ ଗୋଟି ଗୋଟି କରି ବଧ କରିଛନ୍ତି । ଆଉ ତାଙ୍କର ପୁତ୍ର ଆସିଲେ କୁଆଡ଼ୁ ?"

କଂସ ଉତ୍ତର ଦେଇ କହିଲ—"ଅକ୍ରୂର ! ଆପଣ ନିତାନ୍ତ ଭୋଳାନାଥ । ଆପଣ କାହୁଁ ବୁଝିବେ ଏତେ ଗହନ ରାଜମତ ? ବସୁଦେବ ଯେତିକି ସରଳ ବୋଲି ଉପରକୁ ଜଣା ପଡ଼ନ୍ତି, ଭିତରେ ଭିତରେ ସେ ସେତିକି ଚକ୍ରାନ୍ତକାରୀ । ଦେବକୀର ଅଷ୍ଟମ ଗର୍ଭର ବାଳକଟିକୁ ସେ ଗୋପନରେ ନେଇ ନନ୍ଦ ଘରେ ଗୋପରେ ଛାଡ଼ି ଆସିଛି ଏବଂ ନନ୍ଦଘରେ ଜାତ କନ୍ୟାଟିକୁ ଆଣି ମୋତେ ଦେଖାଇଛି । ଏ ବିଷୟରେ ମହର୍ଷି ନାରଦ ମୋତେ ସମସ୍ତ ତଥ୍ୟ କହି ଅଛନ୍ତି । ସେହି ବସୁଦେବ ପୁତ୍ର ମୋର ସମସ୍ତ ଅସୁରଙ୍କୁ ବଧ କରିଛି । ଦେବକୀ ଗର୍ଭରୁ ଜାତ କୃଷ୍ଣ ଓ ରୋହିଣୀ ପୁତ୍ର ବଳରାମ ମୋତେ ବଧ କରିବା ପାଇଁ ଗୋପରେ ବହୁ ଚକ୍ରାନ୍ତ ଚଳାଇ ଅଛନ୍ତି । ତୁମେ ମୋ' ରଥ ନେଇ, ସେ ଦୁହିଁଙ୍କୁ ଡକାଇ ଆଣ । ମୁଁ ସେ ଦୁହିଁଙ୍କୁ ଏଠାରେ କୌଣସି କୌଶଳେ ହତ୍ୟା କରିବା ପାଇଁ ଆୟୋଜନ କରିଛି ।"

ଅକ୍ରୂର ଆଶ୍ଚର୍ଯ୍ୟ ହୋଇ ପଚାରିଲ—"ମହାରାଜ, ପିଲା ଦୁଇଟା ଆପଣଙ୍କ ପରି ଜଣେ ମହାବଳଶାଳୀ ରାଜାଙ୍କୁ କିପରି ବଧ କରିବେ ?"

କଂସ ଉତ୍ତର ଦେଇ କହିଲ—"ଦେବକୀର ବିବାହ ସମୟରେ ଯେଉଁ ଆକାଶ-ବାଣୀ ହୋଇଥିଲା, ଆପଣ କ'ଣ ତା ଶୁଣି ନାହାନ୍ତି ? ଦେବତାମାନେ ମୋ' ବଧ ପାଇଁ ଏପରି ଷଡ଼ଯନ୍ତ୍ର ରଚିଆଇଛନ୍ତି । ଦେବକୀର ଅଷ୍ଟମ ଗର୍ଭରେ ଯେଉଁ ପୁତ୍ର ଜାତ ହେବ, ସେଇ ହେବ ମୋ' ବଧର କାରଣ । ବସୁଦେବ ଚକ୍ରାନ୍ତ କରି ମୋ' ଆଖିରେ ଧୂଳି ଦେଇଛି । ମୁଁ ତା'ର ପ୍ରତିଶୋଧ ନିଶ୍ଚୟ ନେବି ।"

ଆପଣ ଯାଇ ନନ୍ଦଙ୍କୁ ମୋ' ଆଜ୍ଞା ଶୁଣାଇ ଦେବେ । ଯେପରି ହେଉ, ଆପଣ କୃଷ୍ଣ-ବଳରାମଙ୍କୁ ଏଠାକୁ ଘେନି ଆସିଲେ, ମୋ' ମନୋରଥ ସିଦ୍ଧି ହେବ । ନନ୍ଦଙ୍କୁ ଆହୁରି ମଧ୍ୟ କହିବେ—ସେ ଘିଅ, ଦୁଧ, ଲହୁଣୀ, ରୋଟିକା, ଅଧାମ, ପ୍ରଭୃତି ଘେନି ଗୋପାଳ-ମାନଙ୍କ ସହିତ ଆସି ମୋ' ଧନୁଯାଗରେ ଯୋଗଦେବ ।

ଗୋପରେ ଆପଣ ଘୋଷଣା କରିଦେବେ ଯେ, ଧନୁଯାଗରେ ନାନାପ୍ରକାର ଖେଳକସରତର ଆୟୋଜନ କରାଯାଇଛି । ଏ' କଥା ଶୁଣିଲେ ଗୋପାଳମାନେ କୌତୂହଳୀ ହୋଇ ନିଶ୍ଚୟ ମଥୁରା ଆସି ଧନୁଯାଗ ଦେଖିବାକୁ ମନ ବଳାଇବେ । ସେ ବାଳକ ଦୁହିଁଙ୍କ ମଧ୍ୟ ଖେଳକସରତ ପ୍ରିୟ । ତାଙ୍କୁ କୌଣସିମତେ ଆପଣ ମଥୁରାକୁ ଘେନି ଆସିଲେ, ମୁଁ ଏଠାରେ ତାଙ୍କ ବଧ ଲାଗି ଅନେକ ପ୍ରକାର ଆୟୋଜନ କରିଛି । କୁବଳୟାପୀଡ଼ ହସ୍ତୀ, ମଲ୍ଲବୀର ଚାଣୂର ଓ ମୁଷ୍ଟିକ, ପ୍ରଭୃତି ଏଠାରେ ସଜ ହୋଇ ରହିଛନ୍ତି । ସେମାନେ ମଲ୍ଲଯୁଦ୍ଧ ଛଳରେ ରାମ କୃଷ୍ଣଙ୍କୁ ବଧ କରି, ମୋର ଶତ୍ରୁଙ୍କୁ ଯମପୁର ପଠାଇଦେବେ ।

ଅକ୍ରୂର ପୁଣି କହିଲେ—"ମହାରାଜ, ସବୁ ବିଷୟରେ ଅଗ୍ରପଛ ବିଚାର କରି ଦେଖିବା ହେଉଛି ବୁଦ୍ଧିମାନ ବ୍ୟକ୍ତିଙ୍କର କାମ । ନିଜ କୁଳର ଦୁଇଜଣ ବଳବାନ୍ ତଥା ଉତ୍ସାହୀ ଯୁବକଙ୍କୁ ହତ୍ୟା କଲେ, ମଥୁରାର ରାଜନୀତିରେ ଯେଉଁ ଆନ୍ଦୋଳନାତ୍ମକ ମନୋଭାବ ଦେଖାଦେବ, ତାହାକୁ ଆପଣ କିପରି ସମ୍ଭାଳିବେ ? ଆପଣ ନିଜେ କହୁଛନ୍ତି ଯେ, ଯାଦବମାନେ ଆପଣଙ୍କ ଉପରେ ଅସନ୍ତୁଷ୍ଟ ଅଛନ୍ତି, ଏ' ଘଟଣାପରେ ସେମାନେ ଆହୁରି ସକ୍ରିୟ ହୋଇ ଉଠିବେ ନାହିଁକି ?

କଂସ ଗମ୍ଭୀର ହୋଇଯାଇ କହିଲା--"ଅକ୍ରୂର, ତୁମେ କ'ଣ ଭାବୁଛ, ମୁଁ ଏସବୁ କିଛି ଜାଣିନାହିଁ ? ମୁଁ ଭଲଭାବରେ ଜାଣେ, ବସୁଦେବଙ୍କୁ ବୃଷ୍ଣି, ଭୋଜ ଓ ଦାଶାର୍ହମାନେ ସମର୍ଥନ କରନ୍ତି । ମୋ' ପିତା ଉଗ୍ରସେନ ମଧ୍ୟ ସେହି ଦଳରେ ଅଛନ୍ତି । ସେମାନେ ଗୋପନରେ ପରାମର୍ଶ କରି, ଦେବକୀର ଅଷ୍ଟମ ଗର୍ଭରେ ଜାତ ହୋଇଥିବା ଶିଶୁସନ୍ତାନକୁ ଗୋପପୁରକୁ ପଠାଇ ଦେଇଛନ୍ତି । ସେହିମାନଙ୍କ ଷଡ଼ଯନ୍ତ୍ର ଫଳରେ ରାତିରେ ମୋତେ ନିଦ ମାଡ଼ୁନାହିଁ । ସେଇଥିପାଇଁ ରାମକୃଷ୍ଣଙ୍କୁ ହତ୍ୟାକରି ମୁଁ ଷଡ଼ଯନ୍ତ୍ରକାରୀଙ୍କ ମନୋବଳ ଭାଙ୍ଗି ଦେବି । ପିଲାଦୁହିଁଙ୍କ ନିଧନରେ ବସୁଦେବ ପାଗଳ ହୋଇଯିବ । ଠିକ୍ ସେହି ଅବସ୍ଥାରେ ମୁଁ ତାକୁ ହତ୍ୟା କରିବି । ତା'ପରେ ବସୁଦେବଙ୍କ ସମର୍ଥକମାନଙ୍କୁ ଗୋଟି ଗୋଟି କରି ହତ୍ୟା କରି ଉଚିତ ପ୍ରତିଶୋଧ ନେବି ।"

ମୋ ପିତା ବର୍ତ୍ତମାନସୁଦ୍ଧା ରାଜା ହୋଇ ବସିବା ପାଇଁ ମନେମନେ ଆଶା ପୋଷଣ କରିଛନ୍ତି । ସେଇଥିପାଇଁ ସେ ଯାଦବ ଷଡ଼ଯନ୍ତ୍ରକାରୀଙ୍କ ସହିତ ଗୋପନରେ ହାତ ମିଳାଇଛନ୍ତି । ମୁଁ ଏହି ଦୁଷ୍ଟବାଳକ ଦୁହିଙ୍କୁ ହତ୍ୟା କରିବା ପରେ, ଗୋଟି ଗୋଟି କରି ମୋର ବିରୋଧୀ ଯାଦବମାନଙ୍କୁ ହତ୍ୟା କରିବି ଏବଂ ସେଥିରୁ ମୋ' ପିତା ମଧ୍ୟ ଛାଡ଼ ପାଇବେ ନାହିଁ । ତା'ପରେ ମୁଁ ନିଷ୍କଣ୍ଟକ ହୋଇ ସୁଖରେ ରାଜସିଂହାସନରେ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ସୁଖ ଓ ଶାନ୍ତିରେ କାଳଯାପନ କରିବି ।

ଅକ୍ରୂର ! ଆପଣ ଜାଣିଛନ୍ତି—ମୁଁ ବାହାରର ଶତ୍ରୁଙ୍କୁ କେବେହେଲେ ଭୟ କରେ ନାହିଁ । ମୁଁ ମୋର ମିତ୍ରପକ୍ଷଙ୍କ ସାହାଯ୍ୟରେ ବହିଃଶତ୍ରୁଙ୍କୁ ଅନାୟାସରେ ପଦାନତ କରିପାରିବି । ତୁମେ ଜାଣିଛ, ଭୂମଣ୍ଡଳରେ ସର୍ବଶ୍ରେଷ୍ଠ ବଳବାନ୍ ବୀର ଜରାସନ୍ଧ ମୋର ଶ୍ୱଶୁର । ତାଙ୍କ ବ୍ୟତୀତ ମହାବଳଶାଳୀ ଦ୍ୱିବିଦ ବାନରରାଜ, ବାଣାସୁର, ନରକାସୁର ଓ ଶମ୍ବରାସୁର ପ୍ରଭୃତି ରାଜନ୍ୟବର୍ଗ ମୋର ମିତ୍ର । ସେମାନଙ୍କ ସାହାଯ୍ୟରେ ମୁଁ ଅସାଧ୍ୟ-ସାଧନ କରି ପାରିବି । ମୋ' ମନରେ ଏକମାତ୍ର ଭୟ ହୋଇ ରହିଛନ୍ତି, ବସୁଦେବଙ୍କ ପୁତ୍ର କୃଷ୍ଣ ଓ ବଳରାମ । ସେ ଦୁହିଁଙ୍କୁ ମୁଁ ଶେଷ କରି ଦେଇପାରିଲେ, ସବୁଦିଗରୁ ନିଶ୍ଚିନ୍ତ ହୋଇଯିବି । ଆପଣ କୌଣସିମତେ ଶିଖାଇ ବୁଝାଇ କୃଷ୍ଣ-ବଳରାମଙ୍କୁ ମଥୁରା ନେଇ ଆସନ୍ତୁ; ତା'ପରେ ଦାୟିତ୍ୱ ମୋର ।

ଏହା ଶୁଣି ଅକ୍ରୂର ମନେ ମନେ ହସି, ପ୍ରକାଶ୍ୟରେ କହିଲେ—"ରାଜନ୍ ! ଆପଣଙ୍କ ଯୋଜନା ରାଜନୀତ ଦୃଷ୍ଟିରୁ ଅନୁକୂଳ ବୋଲି ମନେ ହେଉଛି । କାରଣ ପ୍ରତ୍ୟେକ ବ୍ୟକ୍ତି ମୃତ୍ୟୁକୁ ଭୟ କରେ ଏବଂ ସେଥିରୁ ରକ୍ଷା ପାଇବା ପାଇଁ ସର୍ବଦା ଯତ୍ନଶୀଳ ହୋଇଥାଏ । କିନ୍ତୁ……ମହାରାଜ, ପ୍ରାରବ୍ଧ ହେଉଛି—ସବୁଠାରୁ ବଡ଼ । ଯାହା ହେବାର କଥା, ତାହା ନିଶ୍ଚୟ ଘଟିବ । ଯାହା ହାତରେ ଯାହାର ମୃତ୍ୟୁ ଲେଖାଥିବ, ତାହାକୁ କେହି ଅନ୍ୟଥା କରି ପାରିବେ ନାହିଁ । ଯଦି ନିଜ କୌଶଳବଳରେ ମୃତ୍ୟୁକୁ ଏଡ଼ାଇ ଯାଇ ପାରୁଥା'ନ୍ତା, ତା' ହେଲେ ସଂସାରରେ ଗୁଣୀ, ଜ୍ଞାନୀ ଓ ବଳଶାଳୀ ବ୍ୟକ୍ତି କେହି ଜଣେ ହେଲେ ମୃତ୍ୟୁ ମୁଖରେ ପଡ଼ନ୍ତେ ନାହିଁ ! ମହାରାଜ, ଆପଣଙ୍କ ଯୋଜନାକୁ ମୁଁ ସମର୍ଥନ କରୁଛି ଏବଂ ତଦନୁସାରେ କାର୍ଯ୍ୟ କରିବାକୁ କେବେହେଲେ ପଶ୍ଚାତ୍ପଦ ହେବି ନାହିଁ । ତଥାପି ମୋର ବିଶ୍ୱାସ—ଯାହା ଘଟିବାର ଥିବ, ତାହା ଅବଶ୍ୟ ଘଟିବ । ବିଧାତାର ମତ ଓ ନିୟମକୁ ଅନ୍ୟଥା କରିବାର ଶକ୍ତି କାହାରି ନାହିଁ । ଏ' ସମ୍ବନ୍ଧରେ ମୁଁ ଆପଣଙ୍କୁ କେତେକ ଐତିହାସିକ ତଥ୍ୟ ଶୁଣାଉଛି । ଆପଣ ମନଧ୍ୟାନ ଦେଇ ତାହା ଶ୍ରବଣ କରନ୍ତୁ ।

## ଛପ୍ପୟ

ଭୟୋ ଦେବକୀ ବ୍ୟାହ ଭଇ ତବ ନଭଦେବ ବାନୀ ।
ଯାକୋ ଅଷ୍ଟମ ପୁତ୍ର ହନେ ତୋକୂଁ ଅଜ୍ଞାନୀ ।।
କରଷି ଦେବକୀ ବଧ କରନେ ଉଦ୍ୟତ ମୋକୁଁ ଜବ ।
ହାଥ ପକରିକେ ରୋକ କହୀଂ ବସୁଦେବ ବାତ ତବ ।।
ସୌଁପି ଦେହୁଁ ବଧ ମତ କରୋ ତନୟ ଦେବକୀ କେ ସବହୁଁ ।
କନ୍ତୁ ଯାତ ତେ ଛଲ କରେଯା, କହୁ ନାରଦ ଗବନେ ଅବହୁଁ ।।



## ଯାହା ଘଟିବାର ଥାଏ

ମନୋରଥାନ୍ କରୋତ୍ୟୁଚ୍ଚୈର୍ଜନୋ ଦୈବହତାନପି ।
ଯୁଜ୍ୟତେ ହର୍ଷଶୋକାଭ୍ୟାଂ ତଥାପ୍ୟାଜ୍ଞାଂ କରୋମି ତେ ।।

(ଭା ୧୦ସ୍କ । ୩୭ଅ । ୩୮ଶ୍ଳୋ)

## ଛପ୍ପୟ

ରାମକୃଷ୍ଣ ମରବାର ଫେର ବସୁଦେବହିଁ ମାର୍‌ । 
ଉଗ୍ରସେନକୁଁ ମାର ରାଜ୍ୟତୈଁ ଅରଜ କଜାର୍‌ ॥ 
ସୁନ ବୋଲେ ଅକ୍ରୁର ନୃପତ ଖାଓ ମତ ତୁମ ଭୟ । 
ହୋତ ହୈକେଁ ରହେ ସୃହି ବେଦନକୋ କଷ୍ଟୟ ॥ 
ପୁରୁଷାରଥ କର୍ତ୍ତବ୍ୟ ହୈ, ଫଲ ପ୍ରାରବଧ ଅଧୀନ ହୈ । 
ସିଦ୍ଧି ଅସିଦ୍ଧି ସମାନ ଜେ ଲଖେ, ନହୀଂ ତେ ଦୀନ ହୈ ॥

ଶୁକଦେବ କହୁଛନ୍ତି—"ହେ ରାଜନ୍, କଂସର ପ୍ରସ୍ତାବ ଶୁଣି ଅକ୍ରୂର ତାଙ୍କୁ ବୁଝାଇବାକୁ ଯାଇ କହିଲେ—ମନୁଷ୍ୟ ପ୍ରାରବ୍ଧଦ୍ୱାରା ନଷ୍ଟ ହୋଇଥିବା ଅନେକ ବିଷୟରେ ଅଭିଲାଷ କରିଥାଏ । ସେହି ଅଭିଲାଷପୂର୍ଣ୍ଣ ହେଲେ ସେ ଆନନ୍ଦିତ ହୁଏ ଏବଂ ଅଭୀଷ୍ଟ ପୂରଣ ନ ହେଲେ, ସେ ସେଥିପାଇଁ ଶୋକ କରିଥାଏ । ତଥାପି ମୁଁ ଆପଣଙ୍କ ଆଦେଶ ନିଶ୍ଚୟ ପାଳନ କରିବି ।

ପୁରୁଷାର୍ଥଦ୍ୱାରା ପ୍ରାରବ୍ଧକୁ କୌଣସିମତେ ମେଣ୍ଟାଇ ହୁଏ ନାହିଁ । ତଥାପି ଲୋକମାନେ ପ୍ରତ୍ୟେକ ବିଷୟରେ ଚେଷ୍ଟା ନ କରି ରହି ପାରନ୍ତି ନାହିଁ । ଯେପର୍ଯ୍ୟନ୍ତ ଏହି ଶରୀର ରହିଛି, ସେପର୍ଯ୍ୟନ୍ତ କିଛି ନା କିଛି କରିବାକୁ ହୁଏ । କିଛି କାର୍ଯ୍ୟ ନ କରି, ମନୁଷ୍ୟ ଶାନ୍ତିରେ ରହିପାରେ ନାହିଁ । ସାତ୍ତ୍ୱିକସ୍ୱଭାବପନ୍ନ ବ୍ୟକ୍ତି ଉତ୍ତମ କାର୍ଯ୍ୟରେ ମନ ବଳାଇ ଥାଏ ଏବଂ ରାଜସ ଓ ତାମସସ୍ୱଭାବପନ୍ନ ଲୋକମାନେ ହିଂସା, ଦ୍ୱେଷ, ପ୍ରମାଦ, ଆଳସ୍ୟ ଓ ନିଦ୍ରା ଆଦିରେ କାଳ ଅତିବାହିତ କରନ୍ତି । ସଂସାରରେ ଜନ୍ମଗ୍ରହଣ କଲେ, ମୃତ୍ୟୁ ଦିନେ ନା ଦିନେ ନିଶ୍ଚୟ ଆସିବ । ଦୁନିଆରେ କେହି କେବେହେଲେ ମୃତ୍ୟୁକୁ ଏଡ଼ାଇ ପାରେ ନାହିଁ । ତଥାପି ଲୋକମାନେ ସର୍ବଦା ମୃତ୍ୟୁକୁ ଭୟ କରିଥା'ନ୍ତି । ସେମାନେ ବଞ୍ଚିରହିବା ପାଇଁ ସର୍ବଦା ଚେଷ୍ଟା କରୁଥା'ନ୍ତି; କିନ୍ତୁ ଜ୍ଞାନୀ ଲୋକମାନେ ସର୍ବଦା ପ୍ରାରବ୍ଧ ଉପରେ ଆସ୍ଥା ରଖି ଚଳିଥାଅନ୍ତି । ସେମାନେ ସ୍ୱଧର୍ମୀ ହୋଇ ମୃତ୍ୟୁ ବରଣ କରନ୍ତି ନାହିଁ କିମ୍ବା ମୃତ୍ୟୁକୁ ଭୟ କରି ଆତଙ୍କିତ ହୁଅନ୍ତି ନାହିଁ । ସେମାନେ ମନେ କରନ୍ତି—ଯେତେବେଳେ ମୃତ୍ୟୁ ହେବାର ଥିବ, ତାହାକୁ କେହି ଅବରୋଧ କରିପାରିବେ ନାହିଁ । ଆୟୁ ସମାପ୍ତ ନ ହେବା ପର୍ଯ୍ୟନ୍ତ କେହି କୌଣସି ଉପାୟରେ ମୃତ୍ୟୁବରଣ କରିପାରିବ ନାହିଁ; କିନ୍ତୁ ମୃତ୍ୟୁର ନିର୍ଦ୍ଦିଷ୍ଟ ସମୟ ଆସିଗଲେ, କୌଣସି ସୁରକ୍ଷିତ ସ୍ଥାନ ତାକୁ ମୃତ୍ୟୁ ମୁଖରୁ ରକ୍ଷା କରିପାରିବ ନାହିଁ । ମହାରାଜ ପରୀକ୍ଷିତଙ୍କର ସର୍ପ ଦଂଶନରେ ମୃତ୍ୟୁ ହେବାର ଥିଲା, ତାଙ୍କ ପୁତ୍ର ସର୍ପ ଦଂଶନରୁ ପିତାଙ୍କୁ ମୁକ୍ତ କରାଇବା ପାଇଁ ଅନେକ ଉପାୟ କଲେ,

ସେ ଅନ୍ତରୀକ୍ଷରେ ମହଲ ନିର୍ମାଣ କରାଇଥିଲେ, ତଥାପି ବାଧାତାର ନିର୍ଦ୍ଦେଶକୁ କେହି ଟାଳି ପାରିଲେ ନାହିଁ । ଶେଷରେ ସେ ବ୍ରାହ୍ମଣ ରୂପଧାରୀ ତକ୍ଷକର ଦଂଶନରେ ପ୍ରାଣ ହରାଇଲେ ।

ବ୍ୟାସଦେବଙ୍କ ମାତାମହ ଥିଲେ—ଜଣେ କୈବର୍ତ୍ତ । ସେ ମୃତ୍ୟୁକୁ ଖୁବ୍ ଭୟ କରୁଥିଲେ । ସେ ଦିନେ ନାରଦଙ୍କୁ କହିଲେ—ତୁମେ ଯାଇ ଯମରାଜଙ୍କୁ କୁହ, ଏଡ଼େବଡ଼ ଯଧାର୍ତାଏ ପଡ଼ନ୍ତୁ । ସେ ଅନ୍ୟ କାହାକୁ ନେଇ ମୋତେ ଛାଡ଼ି ଦିଅନ୍ତୁ ।

ନାରଦ କହିଲେ—କୈବର୍ତ୍ତ ମହାରାଜ, ଏହା ମୋ'ଦ୍ୱାରା ସମ୍ଭବ ହୋଇ ପାରିବ ନାହିଁ । ତୁମେ ବ୍ୟାସଦେବଙ୍କୁ କୁହ । ସେ ଇଚ୍ଛାକଲେ ଏହା ସମ୍ଭବ କରି ଦେଇ ପାରିବେ ।

କୈବର୍ତ୍ତ ବ୍ୟାସଦେବଙ୍କ ପାଖରେ ସବୁକଥା ଜଣାଇଲେ । ବ୍ୟାସଦେବ ନିଜ ଅଜାଙ୍କୁ ଅନେକ ପ୍ରକାର ବୁଝାଇଲେ । କିନ୍ତୁ କୈବର୍ତ୍ତ ସେଥିରେ ସମ୍ମତ ନ ହେବାରୁ, ସେ ଅଜାଙ୍କୁ ନେଇ ଯମରାଜଙ୍କ ନିକଟକୁ ଗଲେ । ଯମରାଜ ସେ ଅଜା ନାତି ଦୁହିଁଙ୍କୁ ନେଇ ମୃତ୍ୟୁଙ୍କ ପାଖକୁ ଗଲେ । ଶେଷକୁ କୈବର୍ତ୍ତର ମୃତ୍ୟୁକୁ କେହି ରୋକି ପାରିଲେ ନାହିଁ ।

ଏହିପରି ଭାବରେ ଅକ୍ରୂର କଂସକୁ ଅନେକ ପ୍ରକାର ବୁଝାଇଲେ । କିନ୍ତୁ ଶେଷରେ କଂସ ଆପଣା ନିଷ୍ପତ୍ତିରେ ଅଟଳ ରହିବାରୁ, ଅକ୍ରୂର କହିଲେ—ମହାରାଜ, ମନୁଷ୍ୟ ନାନାପ୍ରକାର ଉପାୟ କରେ ସତ, ଶେଷକୁ ଯାହା ହେବାର କଥା ତାହାହିଁ ଘଟିଥାଏ ।

ମହାରାଜ, ଆପଣ ହିରଣ୍ୟକଶିପୁଙ୍କ ବିଷୟରେ ଜାଣିଥିବେ । ସେ ମୃତ୍ୟୁ ମୁଖରୁ ରକ୍ଷା ପାଇବାପାଇଁ ନାନାପ୍ରକାର ଉପାୟ କଲେ; କିନ୍ତୁ ଶେଷରେ ନୃସିଂହଙ୍କ ହାତରେ ତାଙ୍କର ପ୍ରାଣ ଗଲା ।

ହେ ମହାରାଜ, ଆପଣ ନିଜ କଥା ଥରେ ଭାବି ଦେଖନ୍ତୁ । ଆପଣ ଆକାଶବାଣୀ ଶୁଣି ଦେବକୀଙ୍କୁ ମାରିବା ଲାଗି ଉଦ୍ୟତ ହୋଇଥିଲେ । ଆପଣ ତାଙ୍କୁ ମାରି ପାରିଲେ କି ? ଆପଣ ତାଙ୍କୁ ବନ୍ଦୀ କରି, ତା'ର ସାତଗୋଟି ପୁଅଙ୍କୁ ହତ୍ୟା କଲେ; କିନ୍ତୁ ତା'ର ଅଷ୍ଟମ ପୁତ୍ରକୁ ମାରି ପାରିଲେ କି ? ସେ କୌଣସିମତେ ଆପଣଙ୍କ କବଳରୁ ରକ୍ଷା ପାଇ ଗୋପପୁରକୁ ଚାଲିଗଲା ।

ମହାରାଜ, ଆପଣ ଦେବକୀଙ୍କର ପୁତ୍ର ଶ୍ରୀକୃଷ୍ଣଙ୍କୁ ମାରିବା ଲାଗି ଏତେ ଅସୁର ପଠାଇଲେ, କିନ୍ତୁ କେହି ଜଣେ ହେଲେ ଶ୍ରୀକୃଷ୍ଣଙ୍କୁ ମାରି ପାରିଲେ ନାହିଁ ବରଂ ସମସ୍ତେ ତାଙ୍କ ହସ୍ତରେ ପ୍ରାଣ ହରାଇ ଯମପୁରକୁ ବାଟ କାଟିଲେ ।

ମହାରାଜ, ମୁଁ ଆଉ ଗୋଟିଏ ଆଖ୍ୟାୟିକା ଆପଣଙ୍କୁ ଶୁଣାଉଛି । ଆପଣ ସେହି ଉପାଖ୍ୟାନଟିକୁ ମନଦେଇ ଶୁଣନ୍ତୁ । ଦାକ୍ଷିଣାତ୍ୟ ଅଞ୍ଚଳର କୃତମାଳା ନଦୀ ତଟରେ ଗୋଟିଏ ରାଜ୍ୟଥିଲା । ସେଠାକାର ରାଜା ଅତ୍ୟନ୍ତ ବୀର । ତାଙ୍କର ଅନେକ ରାଣୀ ଥିଲେ । ସେମାନଙ୍କ ମଧ୍ୟରେ ରାଜା ବଡ଼ ରାଣୀଙ୍କୁ ଖୁବ୍ ସ୍ନେହ କରୁଥିଲେ । ସେ ରାଣୀ ମଧ୍ୟ ରାଜାଙ୍କୁ ପ୍ରାଣ ଦେଇ ଭଲ ପାଉଥିଲେ ।

ଏକଦା ଜଣେ ମହାତ୍ମାଙ୍କ ପାଖରୁ ରାଜା ଶୁଣିଲେ ଯେ, ବଡ଼ ରାଣୀଙ୍କ ହାତରେ ତାଙ୍କର ମୃତ୍ୟୁ ହେବ । ରାଜା ଏ କଥା ଶୁଣି ବ୍ୟସ୍ତ ହୋଇ ଉଠିଲେ । ସେ ଦିନେ ରାଜ୍ୟରୁ ଲୁଚି ପଳାଇଯାଇ, ଗୋଟିଏ ଗ୍ରାମରେ କୃଷକ ହୋଇ ରହିଲେ । ରାଣୀ ପରଦିନ ରାଜାଙ୍କୁ ନ ଦେଖି ତାଙ୍କୁ ଅନେକ ଖୋଜିଲେ । ଶେଷରେ ସେ କୃତମାଳା ନଦୀକୁ ଡେଇଁ ପଡ଼ି ଆତ୍ମହତ୍ୟା କରିବାକୁ ଇଚ୍ଛା କଲେ; କିନ୍ତୁ ରାଣୀଙ୍କର ମୂର୍ଚ୍ଛା ଭଙ୍ଗ ହେବା ପରେ ସେ ଦେଖିଲେ ଯେ, ଜଣେ ତାନ୍ତ୍ରିକ ସାଧୁ ତାଙ୍କୁ ନିଜ ଆଶ୍ରମରେ ରଖାଇ ସେବା କରୁଛନ୍ତି । ରାଣୀ ତାନ୍ତ୍ରିକର ବେଶ ଦେଖି ଭୟରେ ମୂର୍ଚ୍ଛିତ ହୋଇଗଲେ । ସେତିକିବେଳେ ତାନ୍ତ୍ରିକ ମନ୍ତ୍ର ବଳରେ ରାଣୀଙ୍କ ସ୍ମୃତି ଶକ୍ତି ଲୋପ କରାଇ ଦେଇ, ନିଜ ଶକ୍ତିବଳରେ ଅସାଧ୍ୟ ସାଧନ କରିବାକୁ ଲାଗିଲେ । ସେ ତାନ୍ତ୍ରିକ ରାଣୀଙ୍କୁ ଏପରି ଯାଦୁ କରିଦେଲା ଯେ, ରାଣୀ ତା'ର ଇଙ୍ଗିତରେ ପରିଚାଳିତ ହେଲେ ।

ଦିନେ ତାନ୍ତ୍ରିକ ରାଣୀଙ୍କୁ ସଙ୍ଗରେ ନେଇ ରାଜା ରହୁଥିବା ଗ୍ରାମକୁ ଗଲା । ସେଠାରେ ଗୋଟିଏ ଦେବୀ ମନ୍ଦିର ଥିଲା । ସେହି ଦେବୀଙ୍କ ନିକଟରେ ତାନ୍ତ୍ରିକ ଗୋଟିଏ ନରବଳି ଦେବାକୁ ଚାହୁଁଥିଲା । ଦିନେ ଦୈବାତ୍ ଅନ୍ଧାର ରାତିରେ ଦେବୀଙ୍କ ଦର୍ଶନ କରିବା ପାଇଁ କୃଷକ ବେଶଧାରୀ ରାଜା ଆସି ପହଞ୍ଚିଲେ । ତାନ୍ତ୍ରିକ ମନ୍ତ୍ର ବଳରେ ରାଜାଙ୍କୁ ମୋହିତ କରାଇ, ସେହି ରାତିରେ ତାଙ୍କୁ ଦେବୀଙ୍କ ନିକଟରେ ବଳି ଦେବାକୁ ସ୍ଥିର କଲା । ସେହି ତାନ୍ତ୍ରିକ ରାଣୀଙ୍କ ହାତରେ ଖଡ଼୍ଗ ଦେଇ ରାଜାଙ୍କୁ ହତ୍ୟା କରିବା ଲାଗି କହିଲା । ରାଣୀ ରାଜାଙ୍କୁ ଚିହ୍ନି ନ ପାରି ଖଡ଼୍ଗରେ ତାଙ୍କ ଶିରଚ୍ଛେଦ କରି ଦେଲେ; କିନ୍ତୁ ପରେ ରାଣୀ ରାଜାଙ୍କ ଶବକୁ ଚିହ୍ନିପାରି, ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ ହୁଅନ୍ତେ, ଦେବୀ ତା' ଆଗରେ ଛିଡ଼ା ହୋଇ କହିଲେ—ରାଣି ! ତୁମେ ଏପରି ଦୁଃସାହସ କର ନାହିଁ । ମନୁଷ୍ୟ ନିଜର ପ୍ରାରବ୍ଧ ଭୋଗ କରେ । ତୁମର ହାତରେ ରାଜାର ମୃତ୍ୟୁ ଲେଖାଥିଲା । ତାହା ଅନ୍ୟଥା କରିବ କିଏ ।

ତୁମେ ଦୁଇ ଜନ୍ମ ପୂର୍ବରୁ ମୋର ଅନ୍ୟତମ ସେବିକା ରୂପେ ନିଯୁକ୍ତ ହୋଇଥିଲ; କିନ୍ତୁ ସାମାନ୍ୟ ଅପରାଧ ଫଳରେ ତୁମେ ଗାଈ ହୋଇ ଜନ୍ମଗ୍ରହଣ କଲ । ସେହି ଜନ୍ମରେ ଏ ରାଜା ଜଣେ ବ୍ୟାଧ ରୂପେ ଜନ୍ମ ହୋଇଥିଲା । ଦିନେ ସେ ତୁମକୁ ହତ୍ୟା କରିବା ପରେ, ଗୋଟିଏ ବିଷଧର ସର୍ପ ଦଂଶନରେ ପ୍ରାଣତ୍ୟାଗ କଲା । ରାଜା ସର୍ପ ଦଂଶନରେ

ମୂର୍ଚ୍ଛିତ ହୋଇ ଗୋଟିଏ ଶାଳଗ୍ରାମ ଶିଳା ଉପରେ ପଡ଼ି ପ୍ରାଣ ହରାଇଲା । ସେହି ପୁଣ୍ୟ ଫଳରେ ସେ ରାଜପୁତ୍ରରୂପେ ଜନ୍ମଗ୍ରହଣ କରି କୃତମାଳା ରାଜ୍ୟରେ ରାଜା ହେଲା ଏବଂ ତୁମେ ତା'ର ରାଣୀ ହେଲ । ସେ ପୂର୍ବ ଜନ୍ମରେ ବିନାଦୋଷରେ ତୁମକୁ ବଧ କରିଥିବାରୁ, ଏ ଜନ୍ମରେ ତୁମେ ତାକୁ ବଧ କରିଛ । ବର୍ତ୍ତମାନ ନବରାତ୍ରି ବ୍ରତ ଆରମ୍ଭ ହୋଇଛି । ତୁମେ ଏହି ବ୍ରତ ପାଳନ କରି ଦଶମ ଦିନରେ ପ୍ରାଣତ୍ୟାଗ କଲେ, ପୁଣି ମୋ' ପୁରକୁ ଆସି ପୂର୍ବସ୍ଥାନରେ ନିଯୁକ୍ତ ହେବ ।

ହେ ରାଜନ୍, ରାଣୀ ଦେବୀଙ୍କ ଆଦେଶରେ ବ୍ରତପାଳନ କରି, ପୁଣି ତାଙ୍କ ସହଚରୀ ରୂପେ ସ୍ଥାନ ଅଧିକାର କରି ସୁଖରେ କାଳଯାପନ କଲେ । ହେ ମହାରାଜ, ଏପରି ଅନେକ ଉଦାହରଣ ଶାସ୍ତ୍ରରେ ରହିଛି ।

ଏହାଶୁଣି କଂସ କ୍ରୋଧରେ ଗର୍ଜିଉଠି କହିଲା—"ଅକ୍ରୂର, ମୁଁ ତୁମକୁ ଉପଦେଶ ଶୁଣାଇବା ପାଇଁ ଏଠାକୁ ଡାକି ନାହିଁ । ତୁମେ ମୋ' ଆଦେଶ ଅନୁସାରେ କାର୍ଯ୍ୟକର । ନୋହିଲେ......।"

ଅକ୍ରୂର କଂସର କ୍ରୋଧରେ ଆଦୌ ଭୟ ନ କରି କହିଲେ—"ମହାରାଜ, ଉପଦେଶ ଦେବା ମୋର ଧର୍ମ ନୁହେଁ । ତଥାପି ଆପଣଙ୍କ ହିତପାଇଁ ମୁଁ ଏପରି ଉପଦେଶ ଦେବାକୁ ବାଧ୍ୟ ହୋଇଛି । ଆପଣ ନିଜର ମଙ୍ଗଳ ପାଇଁ ଅନ୍ୟକୁ ବଧ କରନ୍ତୁ ନାହିଁ । ଯାହା ଦୈବର ବିଧାନ ତାହାକୁ କେହି ଅନ୍ୟଥା କରି ପାରିବେ ନାହିଁ । ଆପଣ ରାମ-କୃଷ୍ଣଙ୍କ ବଧ ଲାଗି ଯେଉଁ ଉପାୟମାନ ଚିନ୍ତା କରିଛନ୍ତି, ସେଥିରୁ କ୍ଷାନ୍ତ ହୁଅନ୍ତୁ ।"

କଂସ ଆହୁରି ରାଗିଯାଇ କହିଲା—ରାଜନୀତିରେ ସବୁକିଛି କରାଯାଇପାରେ । ରାଜା ନିଜର ମଙ୍ଗଳ ପାଇଁ ଯେ କୌଣସି ଉପାୟ ଅବଲମ୍ବନ କରି ପାରିବ । ଏଥିରେ କାହାରି ହସ୍ତକ୍ଷେପ କରିବାର ଅଧିକାର ନାହିଁ । ମୁଁ ତୁମକୁ ଯେଉଁ ଆଦେଶ ଦେଉଛି, ତୁମେ ସେହି ଅନୁସାରେ ଗୋପପୁରକୁ ଯାଇ କୃଷ୍ଣ-ବଳରାମଙ୍କୁ ରଥରେ ବସାଇ ମଥୁରା ପୁରୀକୁ ଘେନିଆସ ।

କଂସର ଆଜ୍ଞା ଶିରୋଧାର୍ଯ୍ୟ କରି ଅକ୍ରୂର ରାଜପୁରୀରୁ ଚାଲିଯାଇ ଗୋପପୁର ଯିବାପାଇଁ ପ୍ରସ୍ତୁତ ହେଲେ ଏବଂ କଂସ ମଧ୍ୟ ଅନ୍ତଃପୁରକୁ ଯାଇ ଶାନ୍ତିରେ ନିଃଶ୍ୱାସ ମାରିଲା ।

ମହର୍ଷି ସୂତ କହିଲେ—"ହେ ମୁନିଗଣ, ମୁଁ ଆପଣମାନଙ୍କୁ କେଶୀ ଓ ପ୍ରଲମ୍ବାସୁରଙ୍କ ବଧ ଉପାଖ୍ୟାନ ଶୁଣାଇ, ଶେଷରେ ଅକ୍ରୂରଙ୍କ ପ୍ରବେଶ ଅଖ୍ୟାୟିକା ଶୁଣାଇବି ।"

## ଛପ୍ପୟ

ଝିଙ୍କ କହେ ସୁନ କଂସ—ମୋହ ଉପଦେଶ ନ ଦୀକେ ।
କହୁଁ କରନ ଜୋ କାଜ ତାହୁଁ ସତ୍ୱର ଅବ କୀଜେ ॥
ସୁନ ବୋଲେ ଅକ୍ରୂର ଧର୍ମକୀ ବାତ ବତାଇ ।
ହୋନ ଅତ ବଲବାନ୍ ଆପକେ ମନ ନହି ସଇ ॥
ଆଜ୍ଞସୁ ସିର ଧର ଭୂପକର, କାହ୍ନ, ନନ୍ଦବ୍ରଜ ଜାଉଁଗୋ ।
ରଥ ଚଢ଼ାଇକେ ଗୋପ ସଙ୍ଗ, ରାମ-କୃଷ୍ଣକୁଁ ଲାଉଁଗୋ ॥



# କେଶୀ ବଧ

କେଶୀ ତୁ କଂସ ପ୍ରହିତଃ ଖୁରୈର୍ମହୀଂ
ମହାହୟୋ ନିର୍ଜରୟନ୍ ମନୋଜବଃ ।
ସଟାବଧୂତାଭ୍ରବିମାନ ସଂକୁଳଂ
କୁର୍ବନ୍ନଭୋ ହ ଷତଭୀଷିତାଖିଳଃ ॥

(ଭାଗବତ-୧୦ସ୍କ, ୩୭-ଅ, ୧-ଶ୍ଳୋକ)

## ଛପ୍ପୟ

ସୁନ ପ୍ରସନ୍ନ ହ୍ୱୈ କଂସ ଗୟୋ ଭୀତର ମହଲନକେ ।
ଇତ କେଶୀ ବନ ଅଶ୍ୱ ଗୟୋ ଢିଗଁ ବ୍ରଜବାସିନକେ ॥
ଅସୁର ସମୁଝି ସବ ଲୋଗ ଡରେଂ ଭାଗେ ଇତ ଉତକୁଁ ।
ହିନ ହିନାତ ଖଲ ଫିରତ ନିହାରତ ନନ୍ଦନନ୍ଦନ କୁଁ ॥
ଦୁଷ୍ଟ ଦଲନ ଲଖି ଦୈତ୍ୟକୁଁ, ସିଂହନାଦ ଭୀଷଣ କରେଯୋ ।
ସନ୍ମୁଖ ଖଲ ମୁହଁ ଫାରକେ, ଝପଟେଯୋ ନହିଁ ମନମହଁ ଡରେଯୋ ॥

ଶୁକଦେବ କହୁଛନ୍ତି—"ହେ ରାଜନ୍ ପରୀକ୍ଷିତ, କଂସର ଆଦେଶରେ କେଶୀ ଗୋଟିଏ ଭୀଷଣ ଘୋଡ଼ାରୂପ ଧାରଣ କରି, ପ୍ରଚଣ୍ଡ ବେଗରେ ଗୋପପୁର ଆଡ଼କୁ ଧାଇଁବାକୁ ଲାଗିଲା । ତା' ଖୁରର ଆଘାତରେ ପୃଥିବୀ ବିଦୀର୍ଣ୍ଣ ହେଲା ପରି ବୋଧ ହେଲା ।

ତା' ଶରୀରେ ଥିବା ବାଳଗୁଡ଼ିକ ଏପରି ଜବରରେ ଫୁଲିଗଲା ଯେ, ତାହା ଆକାଶରେ କଳାମେଘ ବ୍ୟାପିଗଲା ପରି ବୋଧ ହେଲା । ସେ ନିଜର ଭୀଷଣ ମୁଖ ଗହ୍ୱରେ ବ୍ରଜଭୂମିକୁ ପ୍ରକମ୍ପିତ କରାଇ ଦ୍ରୁତବେଗରେ ଧାଇଁବାକୁ ଲାଗିଲା ।

ପ୍ରତ୍ୟେକ ପ୍ରାଣୀ ଅଦୃଷ୍ଟର ଅଧୀନ ହୋଇ ନିଜ ଗୁଣ ଅନୁସାରେ କାର୍ଯ୍ୟ କରନ୍ତି । ସାତ୍ତ୍ୱିକ, ରାଜସିକ ଓ ତାମସିକ, ପ୍ରକୃତିର ପ୍ରାଣୀମାନେ ନିଜ ନିଜ ପ୍ରକୃତି ଅନୁସାରେ କାର୍ଯ୍ୟ କରନ୍ତି । ସେହିପରି ଅସୁରମାନେ କ୍ରୋଧ, ଘୃଣା, ଦ୍ୱେଷ ତଥା ଶତ୍ରୁତା କରି ଭଗବାନଙ୍କ ହସ୍ତରେ ପ୍ରାଣ ଦେଇ ନିଜେ ମୋକ୍ଷଲାଭ କରନ୍ତି । ଗଙ୍ଗାଜଳରେ ମେଧ୍ୟ ଅମେଧ୍ୟ ଯାହା କିଛି ପଡ଼ିଲେ ମଧ୍ୟ ତାହା ଶୁଦ୍ଧ ହୋଇଯାଏ । ସେହିପରି ଅସୁରମାନେ ଭଗବାନଙ୍କ କ୍ରୋଧର ଶିକାର ହୋଇ ମୃତ୍ୟୁବରଣ କଲେ ମଧ୍ୟ ମୋକ୍ଷ ପଥର ଅଧିକାରୀ ହୋଇଥା'ନ୍ତି ।

ହେ ମୁନିଗଣ, କଂସ ଅକ୍ରୂରଙ୍କୁ ପଠାଇବାଲାଗି ସ୍ଥିର କରିଥିଲେ ମଧ୍ୟ ସେତିକିରେ ତା'ର ମନ ବୋଧ ହେଲା ନାହିଁ । ସେ ପରଦିନ, ଅକ୍ରୂରଙ୍କ ଗୋପପୁର ଯାତ୍ରା ପୂର୍ବରୁ କେଶୀ ନାମକ ଅସୁରକୁ ରାମ-କୃଷ୍ଣଙ୍କ ବଧ ଲାଗି ବୃନ୍ଦାବନକୁ ପଠାଇ ଦେଲା ।

କେଶୀ ଅସୁର ଘୋଡ଼ାରୂପ ଧାରଣ କରି ବ୍ରଜମଣ୍ଡଳରେ ଉପସ୍ଥିତ ହୋଇ ନାନାପ୍ରକାର ଉପଦ୍ରବ ଆରମ୍ଭ କରିଦେଲା । ସେ ଏଣେତେଣେ ଧାଇଁ ପୃଥିବୀ କମ୍ପାଇବାକୁ ଲାଗିଲା । ତା' କଣ୍ଠଦେଶରେ କଳାମେଘ ପରି ଭୟଙ୍କର କେଶରାଶି ଦେଖି ଗୋପପୁରବାସୀମାନେ ଭୟରେ ଏଣେତେଣେ ଧାଇଁ ପଳାଇବାକୁ ଲାଗିଲେ । ସମସ୍ତେ ତା'ର ଉପଦ୍ରବରେ ଅତିଷ୍ଠ ହୋଇ କୃଷ୍ଣଙ୍କୁ ଆର୍ତ୍ତସ୍ୱରରେ ଡାକ ପକାଇଲେ ।

ଶ୍ରୀକୃଷ୍ଣ କେଶୀର ଆଗମନ ଜାଣିପାରି, ବୀରଦର୍ପରେ ଅଗ୍ରସର ହୋଇ କହିଲେ— "ଆରେ ଦୁଷ୍ଟ, ତୁ ଏହି ସରଳ ପ୍ରକୃତିର ନିରୀହ ଲୋକମାନଙ୍କୁ କାହିଁକି ଡରାଉଛୁ ? ତୋ'ର ସାହସ ଓ ବଳ ଥିଲେ, ମୋ' ଆଗକୁ ଆସି ବଳଦର୍ପ ଦେଖା ।"

ଶ୍ରୀକୃଷ୍ଣଙ୍କ ସିଂହନାଦ ଶୁଣି କେଶୀ ଭୀଷଣ ରାଗିଗଲା । ସେ ଆଖି ଲାଲ୍ ଲାଲ୍ କରି ହ୍ରେଷାରବରେ ବ୍ରଜମଣ୍ଡଳକୁ ପ୍ରକମ୍ପିତ କରି ଦେଲା । ତା'ପରେ ସେ ମୁଖ ବିସ୍ତାର-ପୂର୍ବକ ଶ୍ରୀକୃଷ୍ଣଙ୍କ ଆଡ଼କୁ ଅଗ୍ରସର ହେବାକୁ ଲାଗିଲା । ସେ ଆଗଗୋଡ଼ ଦୁଇଟିକୁ ଟେକି ଭଗବାନ୍, ଶ୍ରୀକୃଷ୍ଣଙ୍କ ଉପରକୁ କୁଦି ପଡ଼ିଲା । ଶ୍ରୀକୃଷ୍ଣ ଝଲକରେ ତା'ର ପଛପଟକୁ ବୁଲି ଯିବାରୁ, ସେ ପଛ ଦି' ଗୋଡ଼ରେ ତାଙ୍କୁ ନାଡ ମାରି ବଧ କରିବାକୁ ଚେଷ୍ଟା କଲା । ଏତିକି ବେଳେ ଶ୍ରୀକୃଷ୍ଣ ତା'ର ପଛଗୋଡ଼ ଦୁଇଟିକୁ ଧରି ଏପରି ଭାବରେ ମୋଡ଼ି ଦେଲେ ଯେ, ଅସୁର ଯାଇ ଖଣ୍ଡେ ଦୂରରେ ପଡ଼ିଲା । ଅସୁର ସେହି କଚଡ଼ାରେ ମୂର୍ଚ୍ଛିତ ହୋଇଗଲା । କିଛି ସମୟ ପରେ ଅସୁରର ଚେତା ଫେରି ଆସିଲା । ସେ ଅତ୍ୟନ୍ତ କ୍ରୋଧରେ ପାଟି ଆଁ...କରି ଶ୍ରୀକୃଷ୍ଣଙ୍କ ଆଡ଼କୁ ଧାଇଁ ଆସିଲା ।

ସୂତମୁନି କହିଲେ—"ହେ ମୁନିଗଣ, କେଶୀ ପ୍ରଥମେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପାଦ ପ୍ରହାର କଲା । ଭକ୍ତବତ୍ସଳ ଭଗବାନ୍ ତା' ପଛ ଗୋଡ଼କୁ ଧରି ପକାଇଲେ । କାରଣ ଯେ ଯାହା ପ୍ରଭୁଙ୍କୁ ଅର୍ପଣ କରେ, ସେ ତାକୁ କେବେହେଲେ ଅନାଦର କରନ୍ତି ନାହିଁ । ପ୍ରଭୁଙ୍କର ଗୋଟିଏ ମାତ୍ର ବିଶେଷ ଗୁଣ ହେଉଛି—ପତ୍ର, ପୁଷ୍ପ, ଜଳ, ଫଳ ଆଦି ଯେ ଯାହା ତାଙ୍କୁ ଅର୍ପଣ କରେ, ସେ ତାକୁ ସାଦରେ ଗ୍ରହଣ କରନ୍ତି । ଏଣୁକରି, ଅସୁରମାନେ କ୍ରୋଧରେ ତଥା ଅହଙ୍କାରେ ତାଙ୍କ ପ୍ରତି ଅସ୍ତ୍ର ପ୍ରହାର କରିଥାନ୍ତି, ସେ ତାକୁ ଗ୍ରହଣ କରି, ପ୍ରତିବଦଳରେ ସେମାନଙ୍କୁ ମୋକ୍ଷ ଦାନ କରିଛନ୍ତି । ସେହି ଦୃଷ୍ଟିରୁ କେଶୀ ଯେତେବେଳେ ତାଙ୍କୁ ପାଦ ପ୍ରହାର କଲା, ପ୍ରଭୁ ତାହା ଗ୍ରହଣ କରି ପ୍ରତିବଦଳରେ ବେଶ୍ କଚଡ଼ାଏ ଦେଲେ; କିନ୍ତୁ ହେ ମୁନିଗଣ, ତା'ର ତ ଆଉ ପୁରକୁ ଫିରିବାବେଳ ଆସି ଉପସ୍ଥିତ ହୋଇ ଯାଇଥିଲା, ସେ ସେତିକରେ ସନ୍ତୁଷ୍ଟ ହେବ କିପରି ? ତେଣୁ ସେ ପୁଣି ପାଟି ଆଁ ... କରି ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଡ଼କୁ ମାଡ଼ି ଆସିଲା । ତେଣୁ ପ୍ରଭୁ ଶ୍ରୀକୃଷ୍ଣ ମଧ୍ୟ ଖୁବ୍ ଜୋର୍‌ରେ ତା' ପାଟି ଭିତରକୁ ନିଜ ବିଶାଳ ଭୁଜ ବଢ଼ାଇ ଦେଲେ । ପ୍ରଭୁଙ୍କ ବଳିଷ୍ଠ ଭୁଜର ପ୍ରଥମ ସ୍ପର୍ଶରେ ଅସୁର ଦାନ୍ତଗୁଡ଼ିକ ଝଡ଼ି ପଡ଼ିଲା । ତା'ପରେ ସେ ବିଶାଳ ଭୁଜ ଅସୁର ଗର୍ଭ ଆଡ଼କୁ ବଢ଼ି ଚାଲିଲା ।"

ହେ ମୁନିଗଣ, ପ୍ରଭୁ ଅସୁର କେଶୀକୁ ମୋକ୍ଷ ପ୍ରଦାନ କରିବାକୁ ଚାହୁଁଥିଲେ । ତେଣୁ ତାତିଲା ଲୌହପିଣ୍ଡ ପରି ଭଗବାନ୍‌ଙ୍କ ଭୁଜଦଣ୍ଡ ଅସୁରର ହୃଦୟ ଭିତରକୁ ପ୍ରବେଶ କଲା । ତହୁଁ କେଶୀ ଅନୁଭବ କଲା—ସେ ବିଶାଳ ଭୁଜଦଣ୍ଡର ଶକ୍ତି କେତେ । ଧୀରେ ଧୀରେ ଅସୁରର ନିଃଶ୍ୱାସ ରୋଧ ହୋଇଗଲା । ସେ ଅଣନିଃଶ୍ୱାସୀ ହୋଇ ପଡ଼ିଲା । ତା'ପରେ ତା' ଦେହରୁ ଗ୍ରମଝାଳ ବହିପଡ଼ିଲା ଏବଂ ଅସୁରର ଆଖି ଯୋଡ଼ିକ ଖୋସି ହୋଇଗଲା । କେଶୀ ଚାରିଗୋଡ଼ ମେଲାଇ ଦେଇ, ସେଇଠି ଭୂମିରେ ଶେଷ ନିଃଶ୍ୱାସ ତ୍ୟାଗ କରି ଲୋଟି ପଡ଼ିଲା ।

"ହେ ମୁନିଗଣ, କେଶୀ ଅସୁରର ମୃତ୍ୟୁରେ ଦେବତାମାନେ ଅତ୍ୟନ୍ତ ଆନନ୍ଦିତ ହୋଇ, ପ୍ରଭୁ ଭଗବାନ୍‌ଙ୍କ ମସ୍ତକରେ ପୁଷ୍ପବୃଷ୍ଟି କରିବା ସଙ୍ଗେ ସଙ୍ଗେ ଶୀଘ୍ର କଂସକୁ ବଧ କରିବା ଲାଗି, ମହର୍ଷି ନାରଦଙ୍କ ଦ୍ୱାରା ବାର୍ତ୍ତା ପଠାଇଲେ । ନାରଦ ଦେବଗଣଙ୍କ ବାର୍ତ୍ତା ଘେନିଆସି ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇଗଲେ । ହେ ମୁନିଗଣ, ଆପଣମାନେ ଦେବର୍ଷି ନାରଦଙ୍କ ସ୍ୱଭାବ ସମ୍ବନ୍ଧରେ ଭଲଭାବରେ ପରିଚିତ ଅଛନ୍ତି । ସେ ଚୋରକୁ ଚୋରି କରିବା ପାଇଁ କହିଦେଇ, କନ୍ଟୁଆଳକୁ ଚୋର ଧରିବା ଲାଗି ବାଟ ବତାଇ ଦେବା ଲୋକ । ଅବଶ୍ୟ ସେ ବ୍ରଜହିତ ଲାଗି ଏପରି ପନ୍ଥା ଧରିଥିଲେ । ତେଣୁ ସେ ଦେବଗଣଙ୍କ ବାର୍ତ୍ତା ଘେନି ମର୍ତ୍ତ୍ୟମଣ୍ଡଳରେ ପୁଣ୍ୟଭୂମି ବ୍ରଜଧାମରେ ଉପସ୍ଥିତ ହୋଇଗଲେ ।

ତହୁଁ ଶୌନକ ପଚାରିଲେ—"ହେ ସୂତମୁନି, ଆପଣ ଆମମାନଙ୍କୁ ଅକ୍ରୂରର ବ୍ରଜପୁର ଗମନ ସମ୍ପର୍କରେ କହୁଥିଲେ; ପୁଣି ହଠାତ୍ କଥା ମଝିରେ ନାରଦଙ୍କୁ ଅଣାଇଲେ କାହିଁକି ?"

ମୁନିମାନଙ୍କ ସନ୍ଦେହ ମୋଚନ କରାଇ କହିଲେ—"ହେ ବ୍ରହ୍ମ ସୂତ ପୌରାଣିକ ମୁନିଗଣ, ଭଗବାନ୍ କଂସଙ୍କୁ ମୋକ୍ଷଗତି ଦେବା ପୂର୍ବରୁ ଆଉ ଗୋଟିଏ ଅସୁରଙ୍କୁ ପରମ-ପଦରେ ବସାଇବା ପାଇଁ ମନେ ମନେ ବିଚାର କରୁଥିଲେ । ତେଣୁ ସେହି ପ୍ରଲମ୍ବାସୁର ମୋକ୍ଷଣ ସମ୍ପର୍କରେ ଆପଣମାନଙ୍କୁ ଶୁଣାଇବା ପରେ, ମୁଁ ଅକ୍ରୂରଙ୍କ ବ୍ରଜଗମନ ସମ୍ପର୍କରେ ପ୍ରେମ ଖ୍ୟାନ କରିବି । ଆଉ ମଧ୍ୟ ଦେବଗଣଙ୍କ ବାର୍ତ୍ତା ନେଇ ଆସିଥିବା ନାରଦଙ୍କୁ ପ୍ରଭୁଙ୍କ ସହିତ ଭେଟ କରାଇ ଦେଲେ, ଆପଣମାନେ ପ୍ରଭୁଙ୍କ ମଥୁରା ଲୀଳା ଓ ଦ୍ୱାରକା ଲୀଳା ସମ୍ବନ୍ଧରେ ଅନେକ ବିଷୟରେ ସୂଚନା ପାଇପାରିବେ । ତେଣୁ ଆପଣମାନେ ଭଗବାନ୍ ଶ୍ରୀକୃଷ୍ଣ ଓ ଦେବର୍ଷି ନାରଦଙ୍କ କଥୋପକଥନ ଶ୍ରବଣ କରନ୍ତୁ ।"

### ଛପ୍ପୟ

ପିଛଲେ ପକରେ ପୌର ଦୈତ୍ୟକୂଁ ଶ୍ୟାମ ଘୁମାୟୌ ।
ପୌ ଧନୁ ଫେଁକ୍ୟୋ ଦୁର ଗର୍ୟୋ ସୁରପୁର ଘବରାୟୌ ॥
ପୁନି ଭଠି କାଟନ ହେତୁ ଫାରି ମୁଖ ହରିଡ଼ଙ୍ଗ ଆୟୌ ।
ମୁହଁ ମହଁ ଡାରେ୍ୟା ହାଥ ଦୈତ୍ୟ ହିୟ ମାରି ଗିରାୟୌ ॥
ବ୍ରଜବାସୀ ପ୍ରମୁଦିତ ଭୟେ, ବରସାଓୈଁ ସୁରଗନ ସୁମନ ।
ବୃନ୍ଦାବନ ମହଁ ଦେବ, ଋଷି ପହୁଁଚେ ଗାଓତ କୃଷ୍ଣଗୁନ ॥



# ଦେବର୍ଷି ନାରଦଙ୍କ ଶ୍ରୀକୃଷ୍ଣଙ୍କ ଦର୍ଶନ

ବିଶୁଦ୍ଧବିଜ୍ଞାନଘନଂ ସ୍ୱସଂସ୍ଥୟା
ସମାପ୍ତସର୍ବାର୍ଥମମୋଘବାଞ୍ଛିତମ୍ ।
ସ୍ୱତେଜସା ନିତ୍ୟନିବୃତ୍ତମାୟା—
ଗୁଣପ୍ରବାହଂ ଭଗବନ୍ତ ମୀମହି ॥
(ଶ୍ରୀ.ଭା. ୧୦ସ୍କ. ୩୭ଅ. ୨୩ଶ୍ଳୋ)

## ଛପ୍‌ପୟ

**ଜୟ ଇନ୍ଦୁଜ ବନ୍ଧୁ ସାଁଷ କହନ୍ତେ—ପ୍ରଭୁ ନରବପୁ ଧାରେୟା ।**
**ସୁରରିପୁ ମାରେ ଅମିତ ଅବନ୍ତି ଖଲ କେଶୀ ମାରେୟା ॥**
**ପରଯୋ ମଥୁରା ଜାଇ ଦେଶ ଗନ୍ଧ କଂସ ପଛାରେଂ ।**
**ନରକାସୁର, ମୁର ଯବନ, ଶଙ୍ଖ ଅସୁରନ ପୁନ ମାରେ ॥**
**ବ୍ୟାହ କରେଁ ଷୋଳହ ସହସ, ସୁଖମୟ ଲୀଳା କରହିଁଗେ ।**
**କଲ୍ପବୃକ୍ଷକୁଁ ସ୍ୱର୍ଗତେଁ, ପ୍ରିୟା ହେତୁ ହରି ହରହିଁଗେ ॥**

ଦେବର୍ଷି ନାରଦ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି କହୁଛନ୍ତି—"ହେ ପ୍ରଭୋ, ଆପଣ ହେଉଛନ୍ତି, ଅଖିଳ ବିଜ୍ଞାନ ଘନ । ନିଜ ପରମାନନ୍ଦ ସ୍ୱରୂପରେ ସ୍ଥିତ ହୋଇଥିବାରୁ ଆପଣଙ୍କୁ ସମସ୍ତ ଦ୍ରବ୍ୟ ସୁଲଭ ହେଉଛି । ଆପଣଙ୍କର ଶକ୍ତି ଅମୋଘ ଏବଂ ଆପଣଙ୍କ ତେଜରୁ ଗୁଣପ୍ରବାହ ରୂପକ ସଂସାର ସଦାସର୍ବଦା ଆପଣଙ୍କଠାରେ ଆଜ୍ଞାଧୀନ ପ୍ରାପ୍ତ ହୋଇଛି । ଐଶ୍ୱର୍ଯ୍ୟ ସମ୍ପନ୍ନ ଆପଣଙ୍କର ସେହି ବିଘ୍ନ ରୂପରି ପାଦପଦ୍ମରେ ମୁଁ ଶରଣାପନ୍ନ ହେଉଛି ।"

ସୂତମୁନି ଭଗବାନ୍ ଶ୍ରୀକୃଷ୍ଣ ଓ ଦେବର୍ଷି ନାରଦଙ୍କ କଥୋପକଥନ ପ୍ରସଙ୍ଗ ଅବତାରଣା କରି କହିଲେ—"ହେ ମୁନିଗଣ, ମହର୍ଷି ନାରଦ ହେଉଛନ୍ତି—ଭଗବାନ୍‌ଙ୍କ ମନ । ସତ୍ୟସଙ୍କଳ୍ପମୟ ଭଗବାନ୍ ଯାହା ଭିଆଇବାକୁ ଯାଆନ୍ତି, ତାହାର ପ୍ରେରଣା ପ୍ରଥମେ ନାରଦଙ୍କୁ ମିଳିଯାଏ । ମନର ଗତି ଅତ୍ୟନ୍ତ ପ୍ରଖର । ଭବିଷ୍ୟତ କଥା ମଧ୍ୟ ଲୋକ ମନେ ମନେ ଚିନ୍ତା କରିଥାନ୍ତି । ଅବଶ୍ୟ ସାଧାରଣ ଲୋକେ ଯେତେ କଥା ମନରେ କଳ୍ପନା କରିଥାଆନ୍ତି, କେବେ କେବେ ତାହା ସଫଳ ହୋଇଥାଏ ଏବଂ କେବେ ବା ଆଦୌ ସଫଳ ହୁଏ ନାହିଁ; କିନ୍ତୁ ସତ୍ୟସଙ୍କଳ୍ପମୟ ପ୍ରଭୁ ଭଗବାନ୍‌ଙ୍କ ଚିନ୍ତା କେବେହେଲେ ବିଫଳ ହୁଏ ନାହିଁ । ପ୍ରଭୁ ଯାହା ଯାହା ମନେ ମନେ ସଙ୍କଳ୍ପ କରନ୍ତି, ପ୍ରତ୍ୟେକ ବିଷୟ ମହର୍ଷି ନାରଦ ସ୍ଥଳ ବିଶେଷରେ ନିର୍ଭୟ ହୋଇ ତାହା ପ୍ରକାଶ କରି ଦିଅନ୍ତି ।"

ସୂତମୁନି ପୁଣି କହିଲେ—"ହେ ବିପ୍ରଗଣ, କେଶୀ ଦୈତ୍ୟର ମୃତ୍ୟୁ ପରେ ଦେବର୍ଷି ନାରଦଙ୍କ ଇଚ୍ଛା ହେଲା—ପ୍ରଭୁଙ୍କ ଦର୍ଶନ ଲାଗି । ଠିକ୍ ସେତିକବେଳେ ଦେବତାମାନେ ମଧ୍ୟ ତାଙ୍କର ଦ୍ୱାରା ଶ୍ରୀକୃଷ୍ଣଙ୍କ ନିକଟକୁ ବାର୍ତ୍ତା ପଠାଇଦେଲେ । ଏଣୁ ନାରଦ ବ୍ରଜଧାମକୁ ଆସି ଶ୍ରୀକୃଷ୍ଣଙ୍କର 'ସନ୍ଧ୍ୟାଲୀଳା' ସମୟରେ ତାଙ୍କୁ ଦର୍ଶନ କରିବା ପାଇଁ ମନ ବଳାଇଲେ । ଆପଣମାନେ ଜାଣନ୍ତି—ତାନ୍ତ୍ରିକମାନେ ଦେବୀଙ୍କର ସନ୍ଧ୍ୟାପୂଜା କରି ଅଶେଷ ଫଳ ପାଆନ୍ତି । ତେଣୁ ପ୍ରଭୁଙ୍କର ଗୋପଲୀଳା ଶେଷ ଓ ମଥୁରା ଲୀଳା ଆରମ୍ଭର ଏହା ହେଉଛି ସନ୍ଧିସ୍ଥଳ ।

ପ୍ରଲମ୍ବାସୁର ବଧ ପରେ ପ୍ରଭୁଙ୍କର ଗୋପଲୀଳା ଶେଷ ହୋଇଯିବ । ଏହାପରେ ଆରମ୍ଭ ହେବ ମଥୁରାଲୀଳା ଏବଂ ତା'ପରେ ଦ୍ୱାରକାଲୀଳା ସମୟରେ ପ୍ରଭୁଙ୍କର ମାହାତ୍ମ୍ୟ ପ୍ରକଟ ହେବ । ତେଣୁ ଏହି 'ସନ୍ଧିଲୀଳା' ସମୟରେ ଉପସ୍ଥିତ ହୋଇ, ଭବିଷ୍ୟତ ଲୀଳାଗୁଡ଼ିକ ସମ୍ବନ୍ଧରେ ସୂଚନା କରାଇ ଦେବାଲାଗି ଦେବର୍ଷି ନାରଦ ଯାଇ ପ୍ରଭୁଙ୍କ ବ୍ରଜଧାମରେ ଉପସ୍ଥିତ ହୋଇଗଲେ । ଦେବର୍ଷି ନାରଦ ବୀଣା ବାଦନ କରିବା ସଙ୍ଗେ ସଙ୍ଗେ ମୁଖରୁ ହରିଗୁଣ ଗାନ କରି ପ୍ରଭୁଙ୍କ ନିକଟରେ ପହଞ୍ଚି ଗଲେ । ଠିକ୍ ସେତିକିବେଳେ ପ୍ରଭୁ କେଶୀ ଦୈତ୍ୟକୁ ସଂହାର କରି, ଗୋଟିଏ ଏକାନ୍ତ ସ୍ଥାନରେ ବସିଥିଲେ । ଆପଣମାନେ ଜାଣନ୍ତେ—ଏକାନ୍ତ ସ୍ଥାନରେ ଗୋପନୀୟ କଥା କୁହାଯାଏ, କିମ୍ବା ଆଲୋଚନା କରାଯାଏ । ତେଣୁ ନାରଦ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ସ୍ତୁତି ଆରମ୍ଭ କରି କହିଲେ —ହେ ପରମପୁରୁଷ, ଆପଣଙ୍କ ସ୍ୱରୂପ ଅପ୍ରମେୟ । ସେ ସ୍ୱରୂପଠାରେ ପ୍ରଭୁ ମଧ ପହଞ୍ଚି ପାରିବ ନାହିଁ । ଆପଣ ସମସ୍ତଙ୍କୁ ହଠାତ୍ ନିଜ ଆଡ଼କୁ ଆକର୍ଷିତ କରି ନିଅନ୍ତି । ଆପଣ ହେଉଛନ୍ତି—ସମସ୍ତ ଯୋଗର ଈଶ୍ୱର, ଜଗତର ସ୍ୱାମୀ, ଘଟଘଟବାସୀ ତଥା ସର୍ବବ୍ୟାପକ । ଆପଣ ଯଦୁକୁଳର ଶ୍ରେଷ୍ଠ ବ୍ୟକ୍ତିରୂପେ ସଂସାରରେ ପରିଚିତ ହେବେ । ହେ ପୁରୁଷୋତ୍ତମ, ସୃଷ୍ଟିର ଆରମ୍ଭରେ ଆପଣ ନିଜ ମାୟା ବଳରେ ସତ୍ତ୍ୱ, ରଜ ଓ ତମଗୁଣର ବିସ୍ତାର କରିଛନ୍ତି । ଯେପରି କାଷ୍ଠରେ ଅଗ୍ନି, ଦୁଗ୍ଧରେ ଘୃତ, ଆକାଶରେ ବାୟୁ ବ୍ୟାପ୍ତ ହୋଇରହିଥାଏ । ଠିକ୍ ସେହିପରି ଆପଣ ସାକ୍ଷୀ ରୂପରେ ପ୍ରତ୍ୟେକ ଘଟରେ ବିରାଜମାନ କରିଛନ୍ତି । ଅପଣ ତ୍ରିଗୁଣ, ପଞ୍ଚମହାଭୂତ ତଥା ପଚିଶ ପ୍ରକୃତିରେ ସମ୍ମିଶ୍ରଣରେ ଏହି ସଂସାର ଓ ଜୀବଜଗତକୁ ସୃଷ୍ଟି କରିଛନ୍ତି । ପୁଣି ଆପଣ ନିଜ ସଙ୍କଳ୍ପ ଶକ୍ତି ବଳରେ ଜଗତକୁ ପାଳନ ଓ ପରିଶେଷରେ ରୁଦ୍ରଶକ୍ତି ବଳରେ ଧ୍ୱଂସ କରିଦଅନ୍ତି । ଆପଣ ସ୍ୱୟଂ ନିର୍ଗୁଣାତ୍ମକ, ପୁଣି ନିର୍ଗୁଣମୟ ରୂପେ ଜଗତରେ ଆବିର୍ଭୂତ ହୁଅନ୍ତି । ଯେତେବେଳେ ଦୁଷ୍ଟ ରାକ୍ଷସ, ଦୁରାତ୍ମା ଓ ପାପାତ୍ମା ରାଜନ୍ୟବର୍ଗ ଜଗତର ନିରୀହ ପ୍ରଜାବୃନ୍ଦଙ୍କୁ ଅଶେଷ କଷ୍ଟ ଦଅନ୍ତି, ସେତେବେଳେ ଅପଣ ଲୀଳା କରିବା ଛଳରେ ସଂସାର ମଧ୍ୟରେ ଜାତ ହୋଇ, ଲୀଳାଖେଳା କରିବା ସଙ୍ଗେ ସଙ୍ଗେ ସାଧୁସନ୍ଥ, ଗୁଣୀ, ବରେଣ୍ୟ ତଥା ମହାତ୍ମାମାନଙ୍କ କଷ୍ଟ ଦୂର କରିବାପାଇଁ ସେହି ଦୁଷ୍ଟଶକ୍ତିର ବିନାଶ କରନ୍ତି । ଏହି ଦ୍ୱାପର ଯୁଗରେ ସେହିପରି କେତେକ ମହାନ୍ କାର୍ଯ୍ୟ ସାଧନ କରିବା ପାଇଁ ଆପଣ ମଦନମୋହନର ବେଶରେ ବ୍ରଜବାସୀଙ୍କ ଗହଣରେ ଉପସ୍ଥିତ ହୋଇ ଲୀଳା କରୁଛନ୍ତି । ଅପଣ ଏହିକ୍ଷଣି ଅଶ୍ୱରୂପଧାରୀ ଦୁର୍ଦ୍ଦାନ୍ତ ଅସୁର କେଶୀକୁ ସଂହାର କରି, ଦେବଗଣଙ୍କ ଆନନ୍ଦ ବୃଦ୍ଧି କରାଇ ଅଛନ୍ତି । ଆପଣ ବ୍ୟୋମାସୁରକୁ ବଧ କରିବା ପରେ ବ୍ରଜଲୀଳା ଶେଷ କରି ମଥୁରା ଲୀଳା ଅରମ୍ଭ କରିବେ । ସେଠାରେ ବହୁ କଷ୍ଟ ଭୋଗ କରୁଥିବା ସାତବଂଶ ଯାଦବମାନଙ୍କ ଦୁଃଖ ଦୂର କରିବାପାଇଁ, ଗୋଟିଏ ଦିନ ପରେ ଆପଣ ଚାଣୂର, ମୁଷ୍ଟିକ, କୁବଳୟା ପୀଡ଼ ହସ୍ତୀ ଏବଂ ତାଙ୍କ ଆଶ୍ରୟଦାତା ଦୁଷ୍ଟ କଂସକୁ ସଂହାର କରିବେ ।

ଏହା ଶୁଣି ଶ୍ରୀକୃଷ୍ଣ ହସି ହସି କହିଲେ—ଆପଣ ଏ କ'ଣ ଅଦ୍‌ଭୁତ କଥା କହୁଛନ୍ତି ଦେବର୍ଷି ? ମୁଁ ସାମାନ୍ୟ ବାଳକଟିଏ, ସେଥିରେ ଏଡ଼େ ବଡ଼ ବଡ଼ ମଲ୍ଲ ଓ କଂସକୁ ସଂହାର କରିବି କିପରି ?

ଦେବର୍ଷି ନାରଦ ମୁଖମଣ୍ଡଳରେ ହାସ୍ୟରେଖା ବହି ଦେଇ କହିଲେ—ହେ ପ୍ରଭୋ, ଆପଣ ମୋତେ ଭୁଲାଉଛନ୍ତି କାହିଁକି ? ମୁଁ ଭଲଭାବରେ ଜାଣିଛି—ଆପଣ ବାଳକ ନୁହଁନ୍ତି, ପ୍ରକୃତରେ ଅସୁରକୁଳର ଘାତକ। ସମଗ୍ର ଭୂମଣ୍ଡଳ ପ୍ରତିପାଳକ ପକ୍ଷରେ ଗୋଟିଏ ଦୁଇଟା ମଲ୍ଲଯୋଦ୍ଧା କିବା ଛାର; ଆପଣ ଇଚ୍ଛା କଲେ ଜଗତର ସମସ୍ତ ମଲ୍ଲବୀରଙ୍କୁ ନିମିଷକେ ଧ୍ୱଂସ କରି ଦେଇ ପାରିବେ। ମଥୁରା ଲୀଳାର ପ୍ରାରମ୍ଭରେ ଚାଣୁର, ମୁଷ୍ଟିକ, କୁବଳୟାପୀଡ଼ ହସ୍ତୀ ଏବଂ ଦଶସହସ୍ର ହାତୀମାନଙ୍କର ବଳ ସହିତ ସମାନ ବଳଶାଳୀ ଦୁର୍ଦ୍ଧର୍ଷ କଂସକୁ ଆପଣ ସଂହାର କରି, ଯଦୁକୁଳକୁମୁଦ ବନରେ ଆପଣ ଚନ୍ଦ୍ର ରୂପେ ବିରାଜମାନ କରିବେ। ଗୁରୁପୁତ୍ରଙ୍କ ଅନ୍ୱେଷଣରେ ଯାଇ, ଆପଣ ସମୁଦ୍ର ମଧ୍ୟରେ ଶଙ୍ଖାସୁରକୁ ବଧ କରିବେ। କାଳଯବନ ନାମକ ମହାଗର୍ବୀ ଅସୁରକୁ ଆପଣ ନିଜ ହାତରେ ସଂହାର ନ କରି, ମୁଚୁକୁନ୍ଦର ଦୃଷ୍ଟିପାତରେ ଧ୍ୱଂସ କରାଇ ଦେବେ। ଆପଣଙ୍କ ଦ୍ୱାରକାଲୀଳା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ସେହି ଲୀଳାରେ ଆପଣ ଅନେକ ଅଦ୍‌ଭୁତ କର୍ମ କରି ସୁନ୍ଦରୀ ରାଜକନ୍ୟା—ରୁକ୍ମିଣୀଙ୍କୁ ପ୍ରଥମେ ବିଭା କରିବା ପରେ, ପୁଣି ଜାମ୍ବବତୀ, ସତ୍ୟଭାମା, ଲକ୍ଷ୍ମଣା, କାଳିନ୍ଦୀ, ନାଗ୍ନଜିତୀ, ଆଦି ଆଠଗୋଟି ସୁନ୍ଦରୀ ଲଳନାଙ୍କ ପାଣିଗ୍ରହଣ କରିବେ।

ଏତିକବେଳେ ଶ୍ରୀକୃଷ୍ଣ ହସି ହସି କହିଲେ—ଦେବର୍ଷି ନାରଦ, ଆପଣ କ'ଣ ମୋର ଏତେଗୁଡ଼ିଏ ସ୍ତ୍ରୀଙ୍କ ନାମଗଣନା କଲେଣି ?

ତାହା ଶୁଣି ନାରଦ ଉଚ୍ଛ୍ୱସିତ କଣ୍ଠରେ କହିଲେ—ପ୍ରଭୋ, ଏତିକି କ'ଣ, ଆପଣ ନରକାସୁରକୁ ବିନାଶ କରି ତା' ଗୃହରେ ବନ୍ଦିନୀ ରୂପେ କଷ୍ଟ ଭୋଗ କରୁଥିବା ଷୋଳହଜାର ଏକଶହ କନ୍ୟାଙ୍କୁ ବିବାହ କରି ଯଦୁକୁଳର ସମୃଦ୍ଧି ସାଧନ କରିବେ। ଆପଣ ନିଜର ମହାନ୍ ଶକ୍ତି ପ୍ରଦର୍ଶନ କରାଇ, ପୌଣ୍ଡ୍ରକ ବାସୁଦେବ, କାଶୀରାଜ, ଦନ୍ତବକ୍ର ଓ ଶିଶୁପାଳ ଆଦି ମହାବୀରମାନଙ୍କୁ ବଧ କରିବେ। ବ୍ରାହ୍ମଣର ମୃତ ପୁତ୍ରମାନଙ୍କୁ କାଳହସ୍ତରୁ ଉଦ୍ଧାର କରାଇ, ତାକୁ ଅର୍ପଣ କରିବେ। ଆପଣ ନିଜର ଅଦ୍‌ଭୁତ କର୍ମଦ୍ୱାରା ଯେତେ ବିସ୍ମୟକର କାର୍ଯ୍ୟ କରିବେ, ମୁଁ କେତେ ସେଗୁଡ଼ିକୁ ବର୍ଣ୍ଣନା କରିବି ? ଦ୍ୱାପର ଯୁଗର ଅନ୍ତିମ ଚରଣରେ ଆପଣ ମହାବୀର ପାଣ୍ଡବ ଅର୍ଜୁନଙ୍କୁ ନିମିତ୍ତମାତ୍ର କରି ପୃଥିବୀର ଅସଂଖ୍ୟ ଦୁଷ୍ଟରାଜାମାନଙ୍କୁ ସଂହାର କରିବେ। ସମସ୍ତେ ଜାଣିବେ, ଆପଣ

ଅର୍ଜୁନଙ୍କ ରଥରେ ସାରଥି ହୋଇ ଅଶ୍ୱଚାଳନା କରୁଛନ୍ତି; କିନ୍ତୁ କୁରୁକ୍ଷେତ୍ର ଯୁଦ୍ଧରେ ଆପଣହିଁ ସମସ୍ତ ଦୁଷ୍ଟ ରାଜାମାନଙ୍କୁ ସଂହାର କରି ଅର୍ଜୁନଙ୍କୁ ଖ୍ୟାତିମାନ୍ କରାଇବେ ।

ତହୁଁ ଶ୍ରୀକୃଷ୍ଣ କହିଲେ—ହେ ଦେବର୍ଷି, ଆପଣ ଭାଇ ବଳରାମଙ୍କ ପାଖକୁ ଏହା ପୂର୍ବରୁ ଯାଇଥିଲେ କି ? କାରଣ ସେ ସବଦୀ କଦମ୍ବରସ ପାନ କରି ଭୋଳ ହୋଇଥିବା ପରି, ଆପଣ ମୋତେ କ'ଣ ନାହିଁ କ'ଣ କହୁଛନ୍ତି । ତେଣୁ ମୋର ଧାରଣା ହେଉଛି—ଆପଣ ମଧ୍ୟ ଭାଇ ବଳରାମଙ୍କ ପରି ମଦ୍ୟ ପିଇ ଦେଇ ମସ୍ତ ହୋଇଯାଇଛନ୍ତି । ନୋହିଲେ, ଯାହା ମୁହଁକୁ ଆସୁଛି ଏଣୁତେଣୁ ଏତେ କଥା ମୋ' ବିଷୟରେ କହୁଛନ୍ତି କିପରି ?

ଶ୍ରୀକୃଷ୍ଣଙ୍କ କଥା ଶୁଣି ନାରଦ ଆଉ ନିଜର ହସ ରୋକି ପାରିଲେ ନାହିଁ । ସେ ହସି ହସି କହିଲେ—ପ୍ରଭୋ, ଆପଣ ମୋତେ ଭଣ୍ଡାଇବା ପାଇଁ ଚେଷ୍ଟା କରୁଛନ୍ତି କାହିଁକି ? ମୁଁ ଜାଣେ ପରମାନନ୍ଦ ସ୍ୱରୂପ ବିଜ୍ଞାନଘନ, ଅମୋଘବୀର୍ଯ୍ୟଶାଳୀ ତଥା ସର୍ବତନ୍ତ୍ର ସ୍ୱତନ୍ତ୍ର ଅଟନ୍ତି । ଆପଣ କେବଳ ଲୀଳା ବିସ୍ତାର କରିବା ଲାଗି, ମନୁଷ୍ୟ ଶରୀର ଧାରଣ କରିଛନ୍ତି । ଆପଣଙ୍କ ପକ୍ଷରେ କୌଣସି କଥା ଅସମ୍ଭବ ନୁହେଁ । ମୁଁ ସେହି ସର୍ବେଶ୍ୱର ପରମାତ୍ମାଙ୍କ ପାଦପଦ୍ମରେ ପ୍ରଣାମ ନିବେଦନ କରୁଛି । ଆଜିପର୍ଯ୍ୟନ୍ତ ମୁଁ ଆପଣଙ୍କର ବ୍ରଜଲୀଳା ଦେଖି ଆସିଲି; କାଲିଠାରୁ ମଥୁରାଲୀଳା ଅବଲୋକନ କରି ଚକ୍ଷୁ ପବିତ୍ର କରିବି ।

ସୂତ କହିଲେ—ହେ ମୁନିଗଣ, ଶ୍ରେଷ୍ଠଭକ୍ତ ଦେବର୍ଷି ନାରଦ ଏତିକି କହି ଭଗବାନ୍‌ଙ୍କ ପାଦପଦ୍ମରେ ପ୍ରଣାମ ନିବେଦନ କରି, ବୀଣାବାଦନ ପୂର୍ବକ ଅନ୍ତରୀକ୍ଷ ମାର୍ଗରେ ବୈକୁଣ୍ଠପୁରକୁ ପ୍ରସ୍ଥାନ କଲେ । ମୁଁ ଏହାପରେ ଆପଣମାନଙ୍କ ଆଗରେ ବ୍ୟୋମାସୁରର ବଧ ବୃତ୍ତାନ୍ତ ବର୍ଣ୍ଣନା କରିବି । ଆପଣମାନେ ମନ ଧ୍ୟାନ ଦେଇ ସେହି ପବିତ୍ର ଉପାଖ୍ୟାନ ଶ୍ରବଣ କରନ୍ତୁ ।

## ଛପ୍‌ପୟ

ଧରମରାଜ କେ ରାଜସୂୟକୁଁ ପୂର୍ଣ୍ଣ କରାଓୖଁ ।
ବୂଆ ସୁତ ଶିଶୁପାଳ ଦୁଷ୍ଟକୁଁ ମାର ଗିରାଓୖଁ ।।
ପାର୍ଥସାରଥି ବନେ ଅସ୍ତ୍ର ଲେଙ୍ଗେ ନହୀଁ କରମହୁଁ ।
କାଲ ରୂପତେଁ କରେଁ କୁରୁକ୍ଷେତ୍ର ସମର ମହୁଁ ।।
ସର୍ବେଶ୍ୱର ସବ୍‌କେ ସୁହୃଦୟ, ପରମାନନ୍ଦ ସ୍ୱରୂପ ପ୍ରଭୁ ।
ଯଦୁକୁଳ ଭୂଷନ ଭୁବନପତି, ବିଶ୍ୱମ୍ଭର ବିଶ୍ୱେଶ ବିଭୁ ।।



# ବ୍ୟୋମାସୁର ବଧ

ମୟପୁତ୍ରୋ ମହାମାୟୋ ବ୍ୟୋମୋ ଗୋପାଳ-ବେଶଧୃକ୍ ।
ମେଷାୟିତାନପୋବାହ ପ୍ରାୟଶ୍ଚୋରାୟିତୋ ବହୂନ୍ ॥

(ଭା ୧୦ସ୍କ । ୩୭ଅ । ୨୯ଶ୍ଳୋ)

## ଛପ୍ପୟ

କରତେ ନାରଦ ବନୟ ବହୁଯି ବୈକୁଣ୍ଠ ସିଧାୟେ ।
ଇତ ଗୋପୁନ ଲୈ ଗ୍ୱାଲ ସଙ୍ଗ ବନ ଗିରଧର ଆୟେ ॥
ଭେଡ଼ ଚୋର କୋ ଖେଲ ଭୟୋ ବ୍ୟୋମାସୁର ଆୟୋ ।
ଗ୍ୱାଲ ବାଲ କୋ ବେଷ ଅସୁର ନେ ସୁଘର ବନାୟୋ ॥
କଛୁ ଭେଡ଼ ବାଲକବନେ, ବନେ ଗ୍ୱାଲ କଛୁ ଚୋର ବନ ।
ଚୋରରମହଁ ମିଲି ବ୍ୟୋମ, ହୂ ଗୁହା ଛପାଏଁ ଖଲ ସବନ ॥

ଶ୍ରୀ ଶୁକମୁନି କହୁଛନ୍ତି—ହେ ରାଜନ୍ ପରୀକ୍ଷିତ, ମୟ ଅସୁରର ପୁତ୍ର ମହାମାୟାବୀ ବ୍ୟୋମାସୁର ଗୋପାଳ ବାଳକ ବେଶରେ ବୃନ୍ଦାବନରେ ଆସି ଉପସ୍ଥିତ ହେଲା । ଯେଉଁ ଖେଳରେ ବାଳକମାନେ ଚୋର ହେବାପରେ ମେଣ୍ଢା ହୋଇ ଅନ୍ୟବାଳକମାନଙ୍କ ପିଠିରେ ବସାଇ ଧାଉଁଥିଲେ, ସେହି ଖେଳରେ ରାକ୍ଷସ ବ୍ୟୋମାସୁର ଗୋପବାଳକମାନଙ୍କ ପିଠିରେ ବସାଇ ଦୂରକୁ ନେଇ ଯାଇ ଲୁଚାଇ ଦେଇ ଆସିଲା ।"

ଯାହାଙ୍କ ସହିତ ଖୁବ୍ ମିଳାମିଶା କରି ଖେଳ ଖେଳାଯାଏ, ସେମାନେ ହେଉଛନ୍ତି ପ୍ରକୃତ ସାଙ୍ଗ । ସେମାନଙ୍କ ଆଗରେ ମନ ଖୋଲି କଥା କହିବା ସଙ୍ଗେ ସଙ୍ଗେ ତାଙ୍କଠାରୁ ମନ ଖୋଲା କଥା ଶୁଣିବାକୁ ମିଳେ; କିନ୍ତୁ ଯେଉଁମାନେ ଛଦ୍ମବେଶରେ ସାଙ୍ଗ ହେବାପାଇଁ ଆସିଥା'ନ୍ତି, ସେମାନଙ୍କ ଛଳନା ଅବଶ୍ୟ କିଛିକାଳ 'ବେଶ୍ ଚାଲେ; କିନ୍ତୁ ପରେ ପରେ ତାଙ୍କ ଛଳନାରେ ମୁଖା ଖୋଲିଯାଏ । ମଣିଷ ଆଗରେ ହୁଏତ ଛଳନା ଧରାପଡ଼ି ନପାରେ; କିନ୍ତୁ ଭଗବାନ୍ଙ୍କ ଆଗରେ ଛଳନା କରି କିଏ ଅବା ତିଷ୍ଠି ପାରିବ ?

ସୂତ ପୌରାଣିକ କହିଲେ—"ହେ ମୁନିଗଣ, ଭଗବାନ୍ ଶ୍ରୀକୃଷ୍ଣ କେଶୀ ସମେତ ଅନେକ ଅସୁରଙ୍କୁ ବଧ କରିବା ପରେ, କଂସ ବ୍ୟୋମାସୁରକୁ ପଠାଇଲା । ବ୍ୟୋମାସୁର

ମଧ୍ଯ ଅସୁର ସ୍ୱଭାବ ଦେଖାଇ କଂସ ଆଗରେ ଖୁବ୍ ବାହାଦୁରିଆ କଥା କହିଗଲା । ତାଙ୍କୁ କଂସାସୁର ବ୍ୟୋମାସୁରକୁ ପ୍ରଶଂସା କରି ବ୍ରଜପୁରକୁ ପଠାଇଦେଲା ।”

ଶ୍ରୀକୃଷ୍ଣ ପ୍ରତିଦିନ ଗୋପାଳବାଳକମାନଙ୍କ ସହିତ ବଣକୁ ଯାଇ ଗୋଚାରଣ କରିବା ସଙ୍ଗେ ସଙ୍ଗେ ନାନା ପ୍ରକାର ଖେଳରେ ଦିନ କଟାଉ ଥିଲେ । ସେଦିନ ମଧ୍ଯ ଶ୍ରୀକୃଷ୍ଣ ଗୋପାଳ ବାଳକଙ୍କ ମେଳରେ ଖେଳ ଆରମ୍ଭ କରିଦେଲେ । ସେଦିନ ପିଲାମାନଙ୍କ ମେଳରେ ଶ୍ରୀକୃଷ୍ଣ ମେଣ୍ଢା ଚୋର ଖେଳ ଖେଳି ବସିଲେ । ପିଲାମାନେ ଗଛରୁ ଗୋଟିଏ ହେବ, ଡାଳ ଭାଙ୍ଗି ଆଣିଥିଲେ । ସେଥିରୁ କେତୋଟି ଡାଳରୁ ପତ୍ର ଛଡ଼ାଇ ଦେଲେ ଏବଂ ଆଉ କେତୋଟି ଡାଳରେ ପତ୍ର ଲାଗି ରହିଲା । ପିଲାମାନଙ୍କ ମଧ୍ଯରୁ ଦଳେ ଚୋର, ଦଳେ ମେଣ୍ଢା ଓ ଦଳେ ଜଗୁଆଳ ହୋଇ ଖେଳ ବସିଲେ । ଚୋରମାନେ ମେଣ୍ଢା ଚୋରି କରିବା ପାଇଁ ଟାକି ରହିଥା'ନ୍ତି । ଜଗୁଆଳମାନେ କିଛିଏ ଅସାବଧାନ ହେବାମାତ୍ରେ ଚୋରମାନେ ମେଣ୍ଢାଙ୍କୁ ଚୋରି କରିନେଇ, ଆଉ ଗୋଟିଏ ଗଛମୂଳେ ଲୁଚାଇ ଦେଇ ଆସନ୍ତି । ପୁଣି ଜଗୁଆଳମାନେ ଚୋରକୁ ଗୋଡ଼ାଇବା ଅବସରରେ ଲୁଚି ରହିଥିବା ଚୋରମାନେ ପୁଣି ମେଣ୍ଢାଙ୍କୁ ଚୋରାଇ ନଅନ୍ତି । ଏହିପରି ଭାବରେ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ମେଣ୍ଢାଚୋରି ଖେଳ ଆରମ୍ଭ ହୋଇଗଲା ।

ଖେଳ ଆରମ୍ଭ ହେବାମାତ୍ରେ ଶ୍ରୀକୃଷ୍ଣ, ବଳରାମ, ଦାମ ଓ ସୁଦାମ ଜଗୁଆଳ ହୋଇ ରହିଲେ ଏବଂ ଅନ୍ୟାନ୍ୟ ବାଳକମାନେ ମେଣ୍ଢା ଓ ଚୋର ହୋଇଗଲେ । ସେଦିନ ଗୋଟିଏ ଗୋପାଳ ବାଳକ ବଣକୁ ଆସି ନ ଥିଲା । ବ୍ୟୋମାସୁର ସେହି ବାଳକର ବେଶ ଧାରଣ କରି ପିଲାଙ୍କ ମେଳରେ ପଶି ଖେଳରେ ଯୋଗ ଦେଇଥିଲା । ଅନ୍ୟ ପିଲାମାନେ ବ୍ୟୋମାସୁରକୁ ଆଦୌ ଚିହ୍ନି ପାରିଲେ ନାହିଁ । ଶ୍ରୀକୃଷ୍ଣ ଅସୁରକୁ ଚିହ୍ନି ପାରି ମନେ ମନେ କହିଲେ —ଆଚ୍ଛା······ଦେଖିବାରେ ପୁଅ ! ତୋ' ମଗଜ ଯଦି ଆଜି ମୁଁ ନ ଭାଙ୍ଗିଛି, ତା' ହେଲେ ତୁ ଜାଣିବୁ । ଜୀବନ ନେଇ ଆଜି ଘରକୁ ଫେରିବା ତୋ' ଭାଗ୍ୟରେ ଲେଖାନାହିଁ । ଏହା ମଧ୍ଯରେ ବ୍ୟୋମାସୁର ଚୋରଦଳରେ ଯୋଗଦେଇ ଖେଳିବାକୁ ଲାଗିଲା । ଶ୍ରୀକୃଷ୍ଣ ମଧ୍ଯ ତାହାହିଁ ଚାହୁଁ ଥିଲେ । ଅସୁର ମେଣ୍ଢା ହୋଇଥିବା ପିଲାମାନଙ୍କୁ ନେଇ ଯାଇ, ଗୋଟି ଗୋଟି କରି ପର୍ବତ ଖୋଲରେ ରଖାଇ, ତା' ଦ୍ୱାର ଦେଶରେ ଖଣ୍ଡିଏ ବଡ଼ ପଥର ଥୋଇଦେଲା । ଶେଷକୁ ମାତ୍ର ଚାରିପାଞ୍ଚ ଜଣ ବାଳକ ରହିଗଲେ ।

ପିଲାମାନେ ସିନା ଖେଳରେ ମାତିଥିଲେ: କିନ୍ତୁ ଶ୍ରୀକୃଷ୍ଣ ବ୍ୟୋମାସୁରର କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ଶ୍ରୀକୃଷ୍ଣ ଯେତେବେଳେ ଜାଣି ପାରିଲେ ଯେ, ଗୁମ୍ଫାରେ ଥିବା ପିଲାମାନେ ଅଣନିଃଶ୍ୱାସୀ ହୋଇ ପଡ଼ିଲେଣି, ସେତେବେଳେ ତାଙ୍କ ହୃଦୟରେ ଦୟାଜାତ ହେଲା । ଭକ୍ତବତ୍ସଳ ପ୍ରଭୁ ଭକ୍ତର ଅସୁବିଧା ଦେଖିଲେ, ବିଚଳିତ ହୋଇପଡ଼ନ୍ତି । ସେ ଆଉ ଅଧିକ ସମୟ ନୀରବ ଦ୍ରଷ୍ଟା ହୋଇ ରହି ପାରିଲେ ନାହିଁ ।

ସେଥର ବ୍ୟୋମାସୁର ପିଲାଟିଏ ଧରି ସେହି ପର୍ବତ କନ୍ଦରା ଆଡ଼କୁ ଆଗେଇ ଯିବାମାତ୍ରେ, ଶ୍ରୀକୃଷ୍ଣ ତାକୁ ଧରି ପକାଇ ଗଳଗାଣ୍ଠି କରି ମାଡ଼ି ବସିଲେ । ତହୁଁ ଅସୁର ବଡ଼ଲରେ ବଡ଼ ଗୁଡ଼ ଢହ୍ନିଲା—କହ୍ନାଇ, ଏ' କ'ଣ କରୁଛ ? ଖେଳରେ କ'ଣ ସତରେ ମାଡ଼ ମାରନ୍ତି କି ? ତୁମେ ମୋତେ ସତରେ ଚୋର ବୋଲି ଭାବି ବାଡ଼େଇ ପକାଉଛ । ଏ'ଟା କ'ଣ ଭଲ କଥା ?

ଶ୍ରୀକୃଷ୍ଣ ବ୍ୟୋମାସୁରକୁ ସେହିପରି ଜୋର୍‌ରେ ଧରି କହିଲେ—ଆରେ, ତୁ କ'ଣ ସାଧାରଣ ଚୋର କି ? ତୁ ଗୋଟିଏ ମହାଚୋର । ତୁ ଏଥର ତୋ' ଇଷ୍ଟ ସ୍ମରଣା କର । ତୋ' ବେଳ ଆସି ଶେଷ ହେବାକୁ ବସିଲାଣି ।

ବ୍ୟୋମାସୁର ଏଥର ତା'ର ପ୍ରକୃତ ସ୍ୱରୂପ ଦେଖାଇ, ଶ୍ରୀକୃଷ୍ଣଙ୍କ ହାତରୁ ଖସି ପଳାଇବାକୁ ଚେଷ୍ଟା କଲା । ତା'ର ଟଣାଟଣି ଦେଖି ଶ୍ରୀକୃଷ୍ଣ କହିଲେ—ଅସୁର, ବୃଥାଚେଷ୍ଟା କରି ଲାଭ କ'ଣ ? ମୁଁ ଯାହାକୁ ଥରେମାତ୍ର ଧରିଦିଏଁ ତାକୁ କେବେହେଲେ ଛାଡ଼ି ପାରେ ନାହିଁ ।

ଏହା କହି ଶ୍ରୀକୃଷ୍ଣ ବ୍ୟୋମାସୁରକୁ ମୋଡ଼ାମୋଡ଼ି କରି ତଳେ ପକାଇ ଦେଲେ ଏବଂ ତାକୁ ମାଡ଼ିବସି ଏପରି ବିଧା ଗୋଇଠା ଗୁସ୍ସା କଷିଦେଲେ ଯେ, ଅସୁର ଏକାଥରକେ ହାତଗୋଡ଼ ମେଲାଇ ସେଇଠି ଆଖିବୁଜି ଦେଲା । ଗୋପାଳ ବାଳକମାନେ ବ୍ୟୋମାସୁରର ଭୟଙ୍କର ଚେହେରା ଦେଖି ଭୟରେ କମ୍ପି ଉଠି କହିଲେ—କହ୍ନେଇ, ଏଇଟା ଗୋଟେ କିଏ ? ଏ ଅସୁରଟା ଏଠିକି ଆସିଲା କିପରି ?

ଶ୍ରୀକୃଷ୍ଣ ହସି ହସି କହିଲେ—ଏଇଟା ହେଉଛି-କଂସର ବୋଲକରା ବ୍ୟୋମାସୁର । ତୁମେମାନେ ତ ଖେଳରେ ମଶଗୁଲ୍ ଥିଲ, ମୁଁ କିନ୍ତୁ ପ୍ରଥମରୁ ଏଇ ଅସୁରର ଚାଲିଚଳନ ଧରି ପାରିଥିଲି । ଏ' ଦୁଷ୍ଟ ଆମ ସାଙ୍ଗ ପିଲାମାନଙ୍କୁ ନେଇ ଯାଇ ପାହାଡ଼ ସନ୍ଧିରେ ଲୁଚାଇ ରଖିଛି । ଚାଲ, ତାଙ୍କୁ ସେହି ଅନ୍ଧାରିଆ କୋରଡ଼ରୁ ବାହାର କରି ଆଣିବା ।

ଶ୍ରୀକୃଷ୍ଣ ଗୋପବାଳକଙ୍କ ଗହଣରେ ଯାଇ ସେହି କନ୍ଦରା ପାଖରେ ପହଞ୍ଚିଗଲେ । ସେ ପ୍ରଥମେ ଟଣାଟଣି କରି ଦ୍ୱାର ମୁହଁରେ ରଖାଯାଇଥିବା ବିଶାଳ ପଥର ଖଣ୍ଡିକୁ ଗଡ଼ାଇ ଦେଲେ । ଭିତରେ ଗୋପବାଳକମାନେ ସେତେବେଳକୁ ଅଣନିଃଶ୍ୱାସୀ ହୋଇ କାନ୍ଦିବାକୁ ଆରମ୍ଭ କଲେଣି । ଶ୍ରୀକୃଷ୍ଣ ସେମାନଙ୍କୁ ସାହସ ଦେଇ କହିଲେ—ଭାଇମାନେ, ଆଉ ଭୟ କରନାହିଁ । ମୁଁ ତୁମ ପାଖକୁ ଆସିଗଲିଣି । ତୁମେମାନେ ଆଉ ବ୍ୟସ୍ତ ହୁଅ ନାହିଁ ।

ପିଲାମାନେ କାନ୍ଦବୋବାଳି ବନ୍ଦ କରି ଦେଇ କହିଲେ—କାହ୍ନୁ ଭାଇ, ତୁମେ ଥାଉଁ ଥାଉଁ ଖେଳରେ ଏପରି ଅନ୍ୟାୟ ହେଲା କିପରି ? ତୁମେ ଆଜି ଦଣ୍ଡେ ବିଳମ୍ବ କରିଥିଲେ, ଆମେ ସଭିଏଁ ଅଣନିଃଶ୍ୱାସୀ ହୋଇ ଏଇଠି ମରି ଯାଇଥାଆନ୍ତୁ ।

ଶ୍ରୀକୃଷ୍ଣ କହିଲେ—ଅଉ ଚିନ୍ତା ନାହିଁ । ଆମ ସାଥିରେ ଖେଳୁଥିବା ସେଇ ପିଲାଟା ଆମ ଜାତିର ଗଉଡ଼ ଟୋକା ନୁହେଁ । ସେଇଟା ଗୋଟେ ରାକ୍ଷସ । ଗଉଡ଼ ପିଲାର ବେଶ ଧରି ସେ ଆମ ସହିତ ମିଶି ଯାଇଥିଲା । ଚାଲ ଦେଖିବ, ମୁଁ ତାକୁ ଆଚ୍ଛା କରି ପାନେ ଦେଇ ସାରିଲିଣି ।"

ପିଲାମାନେ କହିଲେ—ସତରେ ଭାଇ, ସେଇଟା ପ୍ରକୃତରେ ରାକ୍ଷସଟାଏ ? ନୋହିଲେ ଆମକୁ ଅଣି ଏମିତି ହଟହଟା କରିବାକୁ ଆଉ ସାହସ କାହାର ? ପିଲାମାନେ ଗୁମ୍ଫାରୁ ତରବର ହୋଇ ବାହାରି ଆସିଲେ । ସେମାନେ ଭୟରେ ଜୁଡ଼ୁବୁଡ଼ୁ ହୋଇ ଯାଇଥିଲେ । ଶ୍ରୀକୃଷ୍ଣଙ୍କ ସଙ୍ଗରେ ଯାଇ, ମୃତ ବ୍ୟୋମାସୁରକୁ ଦେଖି ଆନନ୍ଦ ହୋଇ ଯାଇ କହିଲେ—ଭାଇ, ତୁମେ ଆଜି ଆମ ସଙ୍ଗରେ ଥିଲ ବୋଲି ଆମେ ଜୀବନ ପାଇଲୁ । ନୋହିଲେ, ସତରେ କ'ଣ ଆମେ ଜୀବନ ଘେନି ଘରକୁ ବାହୁଡ଼ିଥା'ନ୍ତୁ ?

ଗୋପବାଳକମାନେ ଏମିତି କେତେ ପ୍ରକାର ମନାଲିଆ କଥା କହି ଶ୍ରୀକୃଷ୍ଣଙ୍କୁ ଘେରିଯାଇ ପୁଣି ନାଚକୁଦ ଆରମ୍ଭ କରିଦେଲେ ଏବଂ ବ୍ୟୋମାସୁର ମୃତ୍ୟୁମୁଖରେ ପଡ଼ିଥିବାରୁ, ଦେବତାମାନେ ଆକାଶରୁ ଶ୍ରୀକୃଷ୍ଣ ଶିରରେ ପୁଷ୍ପବୃଷ୍ଟି କଲେ ।

ସୂତ ମହର୍ଷି କହିଲେ—ହେ ମୁନିଗଣ, ଶ୍ରୀକୃଷ୍ଣଙ୍କ ଅଦ୍‌ଭୁତ କର୍ମ ସମ୍ପର୍କରେ ଶୁଣିଲତ ! ସେଇଥିପାଇଁ କଥାରେ ଅଛି—'ମାରେ ହରି ରଖେ କେ, ରାଖେ ହରି ମାରେ କେ' । ଶ୍ରୀକୃଷ୍ଣ ବ୍ୟୋମାସୁରକୁ ସଂହାର କରି ଗୋପବାଳକଙ୍କ ସହିତ ଗୋପପୁରକୁ ଫେରି ଆସିଲେ । ଏହାହିଁ ଥିଲା—ଶ୍ରୀକୃଷ୍ଣଙ୍କର ବୃନ୍ଦାବନରେ ଶେଷଥର ପାଇଁ ଗୋଚାରଣ ଓ ଅସୁର ସଂହାର । ଏହାପରେ ପ୍ରଭୁ ତାଙ୍କର ପ୍ରକଟ ବ୍ରଜଲୀଳାକୁ ସମ୍ବରଣ କରି, ମଥୁରା ଲୀଳା ପାଇଁ ସଜବାଜ ହୋଇ ଯାଇଥିଲେ । ଏଥି ହେତୁରୁ ମୁଁ ଆପଣମାନଙ୍କୁ ଶ୍ରୀକୃଷ୍ଣଙ୍କ ମଥୁରାଲୀଳାର ମହତ୍ତ୍ୱ ସମ୍ପର୍କରେ ପ୍ରସଙ୍ଗମାନ ଶୁଣାଇବି । ସେହି ପ୍ରସଙ୍ଗର ପ୍ରଥମ କାହାଣୀ ହେଉଛି—ଅକ୍ରୂରର ଗୋପପୁର ଆଗମନ । କଂସର ଆଜ୍ଞା ପାଇ ମହାମନା ଅକ୍ରୂର ଆନନ୍ଦ ମନରେ ଗୋପପୁରକୁ ଆସିବା ଲାଗି ପ୍ରସ୍ତୁତ ହୋଇଗଲେ । ଏଥର ମୁଁ ସେହି କାହାଣୀ ବର୍ଣ୍ଣନା କରି, ଆପଣମାନଙ୍କୁ ଆପ୍ୟାୟିତ କରାଇବି ।

### ଛପ୍‌ପୟ

ତାପି ଗୁହା ମୁଖ ଦେହି ଶିଳରେ ସୁର ସନ୍ତାପୀ ।
ଭକ୍ତବତ୍ସଲ ଭଗବାନ ଜାନ ପଦ ପକଡ଼େ୍ୟା ପାପୀ ।

ବୃକ ସମ ଦୈତ୍ୟୋ ଦବୋଚ ସିଂହସମ ଗର୍ଜନ କୀନ୍ହୀ ।
ବଲକେ ପଶୁସମ ମାର ମୁକ୍ତି ସୁରପୁରକୁଁ ଦୀନ୍ହୀ ॥
ଗ୍ୱାଲ୍ ନକରେ ଗୁହାତେଁ ବ୍ୟୋମାସୁରକୁଁ ମାରକେଁ ।
ଆୟେ ବ୍ରଜମିଲ ସଖନ ସଂଗ, ବନତେଁ ଗାଇ ଚରାଇକେଁ ॥



# ଅକ୍ରୂରଙ୍କ ଗୋପପୁର ଗମନ

ଅକ୍ରୂରୋଽପି ଚ ତାଂ ରାତ୍ରିଂ ମଧୁପୁର୍ଯ୍ୟା ମହାମତିଃ ।
ଉଷିତ୍ୱା ରଥମାସ୍ଥାୟ ପ୍ରୟଯୌ ନନ୍ଦଗୋକୁଳମ୍ ॥
(ଶ୍ରୀଭା ୧୦ସ୍କ. ୩୮ଅ. ୧ଶ୍ଳୋ)

## ଛପ୍ପୟ

ଇତ ଯାଦବ ଅକ୍ରୂର କଂସ ଆୟସୁ ସିର ଧରକେଂ ।
ଅପର ଦିବସ ବ୍ରଜ ଚଲେ ହରଷି ହରି ସୁମିରନ କରକେଂ ॥
ମଗ ମହୁଁ ସୋଚତ ଜାତ ଆଜ ହୈଁ ହରି ଢିଁଗ ଜାଉଁ ।
କରି ହରି ଦରଶନ ମନୁଜଦେହକୋ ସୁଭ ଫଲ ପାଉଁ ॥
ପରୂଁ ପଗନମହ ପ୍ରଭୁ ଝଟଇ, ମୋକୁଁ ହୃଦୟ ଲଗାଇଁଗେ ।
ଜନମ ଜନମକେ ସକଲ ଅଘ, ଶ୍ୟାମ ପରମ କଟି ଜାଇଁ ଗେ ॥

ଶ୍ରୀ ଶୁକମୁନି କହୁଛନ୍ତି—ହେ ରାଜନ୍ ! ଅକ୍ରୂର ସେହି ରାତ୍ରିଟି ମଧୁପୁରୀ (ମଥୁରା) ରେ ବିତାଇ, ପରଦିନ ପ୍ରାତଃ କାଳରେ ରଥରେ ଆରୋହଣ କରି, ଗୋପପୁର ଆଡ଼କୁ ଅଗ୍ରସର ହେଲେ ।

ଯାହାଙ୍କୁ ଆମ୍ଭେମାନେ ସ୍ମରଣ କରୁଅଛୁ, ଯାହାଙ୍କ କୀର୍ତ୍ତିଗାଥା ଶୁଣି ଶୁଣି କର୍ଣ୍ଣକୁହର ପରିପୂର୍ଣ୍ଣ ହୋଇଥାଏ, ଯାହାଙ୍କ ଦର୍ଶନ ଲାଗି ଆଖି ସଦା ଲାଖି ରହିଥାଏ, ତାହାଙ୍କ ଦର୍ଶନର ସମ୍ଭାବନା ଆସି ଉପସ୍ଥିତ ହେଲେ, ଅନ୍ତଃକରଣରେ ଏପରି ଭାବ ଜାତ ହୁଏ ଯେ, ତାହାକୁ କେବଳ ଅନୁଭବୀ ହିଁ ଅନୁଭବ କରିପାରିବ ସିନା, ଅନ୍ୟ କେହି କହିପାରିବ ନାହିଁ । ଏହାକୁହିଁ 'ପୂର୍ବରାଗ' କୁହାଯାଏ । କୌଣସି କବିଙ୍କର କବିତା ପାଠକର, କୌଣସି କୀର୍ତ୍ତିଶାଳୀ ବ୍ୟକ୍ତିଙ୍କର ଜୀବନୀ ଅନୁଧାନ କର କିମ୍ବା କୌଣସି

ସନ୍ଥ-ମହାତ୍ମାଙ୍କର ଯଶଗାଥା ଶୁଣିକରି, ସେହି ସଦ୍ଗୁଣସମ୍ପନ୍ନ ମନୀଷୀଙ୍କର ଦର୍ଶନ ଲାଗି ମନ ଉଦ୍‌ବେଳିତ ହୋଇଯାଏ । ଯେଉଁ ମହାପୁରୁଷଙ୍କୁ ଦର୍ଶନ କରିବା ପାଇଁ ମନ ବ୍ୟାକୁଳ ହେଉଥାଏ, ଅଥଚ କୌଣସି କାରଣବଶତଃ ତାଙ୍କ ସାକ୍ଷାତ୍ ସମ୍ଭବ ହେଉ ନଥାଏ, ସେପରି ବ୍ୟକ୍ତିଙ୍କ ଦର୍ଶନର ଶୁଭ ମୁହୂର୍ତ୍ତ ଆସି ଉପସ୍ଥିତ ହେଲେ, ମନରେ ଅପୂର୍ବ ଆନନ୍ଦର ହିଲ୍ଲୋଳ ଖେଳିଯାଏ । ପ୍ରେମୀଙ୍କ ସହିତ ମିଳନ ସହଜରେ ହୋଇପାରେ ନାହିଁ । ସେପରି ଅବସ୍ଥାରେ ଯଦି ତାଙ୍କ ସାନିଧ୍ୟ ଲାଭର ସମ୍ଭାବନା ସହଜ ହୋଇଯାଏ, ତେବେ ମନ ଆନନ୍ଦରେ ଉଲ୍ଲସିତ ହୋଇଉଠେ ।

ମଥୁରାରୁ ଗୋପପୁରର ଦୂରତା ଆଦୌ ବେଶୀ ନୁହେଁ । ଇଚ୍ଛା କଲେ ମଣିଷ ଦିନକରେ ଦୁଇଥର ଯିବାଆସିବା କରିବା ଅସମ୍ଭବ ନୁହେଁ; କିନ୍ତୁ ସେତିକ ମାର୍ଗ ଅତିକ୍ରମ କରି, ମଥୁରାବାସୀ ଶ୍ରୀକୃଷ୍ଣଙ୍କ ଦର୍ଶନ କରିପାରୁ ନଥିଲେ । ଅକ୍ରୂରଙ୍କର ଅବସ୍ଥା ଠିକ୍ ସେହିପରି ହୋଇଥିଲା ।

ଅକ୍ରୂର ହେଉଛନ୍ତି—ଶ୍ରୀକୃଷ୍ଣଙ୍କର ପରମଭକ୍ତ । ସେ ଜାଣିଥିଲେ—ଶ୍ରୀକୃଷ୍ଣ ହେଉଛନ୍ତି ପରଂବ୍ରହ୍ମ । ସେ ବ୍ରଜପୁରରେ ଅବସ୍ଥାନ କରୁଥିଲେ ମଧ୍ୟ ଏଗାରବର୍ଷ ହେଲା ଅକ୍ରୂର ତାଙ୍କୁ ଦର୍ଶନ କରିପାରୁ ନଥିଲେ । ମନର ଭାବନାକୁ ସେ ମନ ମଧ୍ୟରେ କୌଣସିମତେ ଗୋପନ କରି ରଖିଥିଲେ । ଦୈବାତ୍ କଂସ ଅକ୍ରୂରଙ୍କୁ ହିଁ ଶ୍ରୀକୃଷ୍ଣଙ୍କୁ ଆଣିବାଲାଗି ଗୋପପୁରକୁ ପଠାଇଥିଲା । ଏହାଫଳରେ ତାଙ୍କ ମନରେ ଅଶେଷ ହର୍ଷଜାତ ହୋଇଥିଲା ଯେତେଅବା ଚିର ବୁଭୁକ୍ଷିତ ବ୍ୟକ୍ତିକୁ ସୁସ୍ୱାଦୁ ଭୋଜନ ମିଳିଗଲା !

ସେ ଅବଶ୍ୟ ଶତ୍ରୁର ଦୂତସାଜି ଯାଉଥିଲେ; ତଥାପି ତାଙ୍କର ଧାରଣା ହେଲା— ଶ୍ରୀକୃଷ୍ଣ ହେଉଛନ୍ତି—ସର୍ବଜ୍ଞ ଓ ଅନ୍ତର୍ଯାମୀ । ତେଣୁ ତାଙ୍କ ମନରେ କୌଣସି ଶଙ୍କା ଜାତ ହେଲା ନାହିଁ । ସେ ପ୍ରଭୁଙ୍କ ଦର୍ଶନଲାଗି ବ୍ୟାକୁଳ ହୋଇ ଉଠିଲେ ।

ମହର୍ଷି ସୂତ କହିଲେ—ହେ ମୁନିଗଣ, ମୁଁ ପ୍ରସଙ୍ଗକ୍ରମେ କେଶୀ ଓ ବ୍ୟୋମାସୁର ବଧ ସମ୍ପର୍କରେ ଆଲୋଚନା କଲି । ଏବେ ଆପଣମାନେ ଅକ୍ରୂରଙ୍କ ଗୋପପୁର ଆଗମନ ସମ୍ବନ୍ଧରେ ମନ ଦେଇ ଶୁଣନ୍ତୁ । ସକାଳ ହେବାମାତ୍ରେ ଅକ୍ରୂର ଆନନ୍ଦରେ ପୁଲକିତ ହୋଇ ଉଠିଲେ । ତାଙ୍କର ଏ' ପ୍ରକାର ଅବସ୍ଥା ଦେଖି ତାଙ୍କ ପତ୍ନୀ ତାହାର କାରଣ ପଚାରନ୍ତେ କହିଲେ ଅକ୍ରୂର—ନାଃ, ସେପରି କିଛି ନୁହେଁ । କାଲି ରାଜା ମୋତେ ରାମ-କୃଷ୍ଣଙ୍କୁ ଗୋପରୁ ଆଣିବା ପାଇଁ ଆଜ୍ଞା ଦେଇଛନ୍ତି । ସମସ୍ତ ପ୍ରିୟଜନଙ୍କ ମୁଖଦର୍ଶନର ସୌଭାଗ୍ୟପ୍ରାପ୍ତ ହେବ ତ, ସେଇଥିପାଇଁ ମନଟି ଉଲ୍ଲସିତ ହୋଇ ଉଠିଛି ।

ଏହାଶୁଣି ପତ୍ନୀ ପୁଣି ପଚାରିଲେ—ରାଜାଙ୍କ ମନରେ କୌଣସି ଦୁର୍ଭାବନା ନାହିଁ ତ ? ସେ ହୁଏତ ପିଲା ଦୁଇଟିଙ୍କୁ ମୃତ୍ୟୁଦଣ୍ଡ ଦେବାଲାଗି ଯୋଜନା କରୁଥିବେ !

ଏହାଶୁଣି ଅକ୍ରୂର କହିଲେ—ଏପରି କଥା ମୁହଁରେ ଧର ନାହିଁ । କେହି ଶୁଣି ପକାଇଲେ ମହାବିପଦ ଆସି ଆମ ମୁଣ୍ଡରେ ଅଜାଡ଼ି ହୋଇ ପଡ଼ିବ । ଯଦିଓ ଆମେ ଆମ ଘରଭିତରେ କଥାବାର୍ତ୍ତା ହେଉଥାଉଁ, ତଥାପି ଘରକାନ୍ଥର ମଧ୍ୟ କାନ ଅଛି । ତୁମେ ଯାହା ଆଶଙ୍କା କରୁଛ, ତାହା ଆଦୌ ଅମୂଳକ ନୁହେଁ । ତଥାପି ଈଶ୍ୱର ଯାହା କରନ୍ତି, ତାହା ପ୍ରାଣୀର ମଙ୍ଗଳ ଉଦ୍ଦେଶ୍ୟରେ କାର୍ଯ୍ୟକାରୀ ହୋଇଥାଏ ।

ଅକ୍ରୂର ମନେ ମନେ ବିଷ୍ଣୁଙ୍କ ନାମ ସ୍ମରଣ କରି ନିତ୍ୟକର୍ମ ଶେଷ କରିବା ପରେ ସଜ ହୋଇ ବାହାରି ପଡ଼ିଲେ । ମନରେ ତାଙ୍କର ଅସୁମାରି ଆନନ୍ଦ । ସେ ବେଶ-ପୋଷାକରେ ସଜ୍ଜିତ ହୋଇ ମଥୁରାପୁରୀରୁ ବାହାରି ପଡ଼ିଲେ ।

ସଂସାରୀ ପ୍ରାଣୀ ସାଂସାରିକ ଧନ୍ଦାରେ ବୁଡ଼ି ରହିଥିବା ସମୟରେ ତା'ର ମନ କେବଳ ସେଇଥିରେ ଲାଗି ରହିଥାଏ । ଯେତେବେଳେ ସେ ସାଂସାରିକ ବାସନାକୁ ଦୂରେଇ ଦେଇ ପ୍ରଭୁଙ୍କ ସାନ୍ନିଧ୍ୟ ଲାଭ ପାଇଁ କମର କଷି ବାହାରି ପଡ଼େ, ତା'ର ହୃଦୟ କୃଷ୍ଣମୟ ହୋଇଉଠେ । ଅକ୍ରୂର ରାଜକାର୍ଯ୍ୟ ମଧ୍ୟରେ ବୁଡ଼ି ରହିଥିବା ସମୟରେ ଶ୍ରୀକୃଷ୍ଣଙ୍କ ସ୍ମରଣରେ ସମୟ ଅତିବାହିତ କରୁଥିଲେ । ସେ ଶ୍ରୀକୃଷ୍ଣଙ୍କୁ ଆଣିବା ଲାଗି ଯିବା ସମୟରେ ମାର୍ଗରେ ତାଙ୍କ ଭକ୍ତିରେ ଅଭିଭୂତ ହୋଇ ଉଠିଲେ ।

ମନୁଷ୍ୟ ଯେତେବେଳଯାଏ ସାଂସାରିକ ବନ୍ଧନରେ ପଡ଼ିଥାଏ, ତା' ମନରେ ନାନାପ୍ରକାର ଅହଙ୍କାର ଜାଗିଉଠେ । ସେ ନିଜର ଜାତି, ଗୋତ୍ର, କୁଳ, ପଦ, ପଦବୀ ତଥା ଆତ୍ମମର୍ଯ୍ୟାଦାରେ ବୁଡ଼ିରହେ । କିନ୍ତୁ ଯେତେବେଳେ ସେ ବନ୍ଧନରୁ ମୁକ୍ତ ହୋଇ ଭକ୍ତିମାର୍ଗରେ ପଥିକ ହୁଏ, ସେତେବେଳେ ଭକ୍ତିର ନମ୍ରତା ତା' ମନକୁ ଅଧୋରିବସେ । ସେ ଯେ କୌଣସି କାର୍ଯ୍ୟକରେ, ସେଥିରେ ଦୀନତାର ଆଭାସ ମିଳିଥାଏ । ସେ ଭାବେ—ପରମାତ୍ମା ମୋ' ହୃଦୟରେ ଥାଇ, ମୋତେ ଯାହା କରିବା ଲାଗି ପ୍ରେରଣା ଦେଉଛନ୍ତି, ମୁଁ ତାହାହିଁ କରୁଛି । ସେ ଆହୁରି ମଧ୍ୟ ମନେ ମନେ ବିଚାର କରେ—ମୁଁ ଏଥିପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ । ମୋ'ପ୍ରତି ପ୍ରଭୁଙ୍କର ଅଶେଷ କରୁଣା ରହିଛି । ତେଣୁ ମୁଁ ଏତେ ଗୁଡ଼ିଏ କାମ କରିପାରୁଛି ।

ଅକ୍ରୂର ବାଟରେ ଯାଉ ଯାଉ ଭାବୁଥିଲେ—ଆଜି କ'ଣ ସତରେ ମୁଁ ପ୍ରଭୁଙ୍କ ଦର୍ଶନ କରିବି ? ପୁଣି ଚିନ୍ତା କରୁଥିଲେ—ମୁଁ କ'ଣ ସ୍ୱପ୍ନ ଦେଖୁଛି ନା କ'ଣ ? ନାଃ, ଏହା କେବେହେଲେ ସ୍ୱପ୍ନ ନୁହେଁତ ! ରାଜପଥରେ ଘୋଡ଼ା ଟପ୍‌ଟପ୍ ଶବ୍ଦ କରି ଧାଇଁଛନ୍ତି, ରଥର ଗତି ମଧ୍ୟ ପ୍ରଖର । ଏହା ସ୍ୱପ୍ନ ହେବ କିପରି ? ମୁଁ ଅଳ୍ପ ସମୟ ମଧ୍ୟରେ ବୃନ୍ଦାବନର ପବିତ୍ର ଭୂମିରେ ଯାଇ ପହଞ୍ଚି ଯିବି । ଗୋପପୁରରେ ପ୍ରବେଶ କରିବା ମାତ୍ରେ ନନ୍ଦରାଜାଙ୍କ ଭବନରେ ପହଞ୍ଚିବା ଆଦୌ ଅସମ୍ଭବ ନୁହେଁ । ତଥାପି ଭାଗ୍ୟରେ ନଥିଲେ, ପ୍ରଭୁଙ୍କର ଦର୍ଶନ ସୁଲଭ ହେବ ନାହିଁ । ମୁଁ ଗୋଟିଏ ପାପୀ ରାଜାର ଭୃତ୍ୟ—ମହାପାପୀ ।

ମୁଁ ଜୀବନରେ କୌଣସି ପୁଣ୍ୟକର୍ମ କରି ନାହିଁ । ସାରାଜୀବନ ପାପୀ କଂସର ପଦସେବା କରି ବିତାଇ ଦେଲି । ମୋର ପୁଣ୍ୟ କାହିଁ ଯେ, ମୁଁ ପ୍ରଭୁଙ୍କ ଦର୍ଶନ କରିବାକୁ ସମର୍ଥ ହେବି ? ରାଜା ମୋତେ ବହୁ ଅନୁଚିତ କାର୍ଯ୍ୟରେ ନିଯୁକ୍ତ କରିଛନ୍ତି । ମୁଁ ମଧ୍ୟ ଭୃତ୍ୟର ଜୀବନ ଧାରଣ କରି ମୁଣ୍ଡପାତି ସବୁକିଛି ପାଳନ କରି ଆସିଛି । ଏପରି ଗୋଟିଏ ଅଧମ ପ୍ରାଣୀ ଯଦି ସୌଭାଗ୍ୟ ବଶତଃ ପ୍ରଭୁଙ୍କ ଦର୍ଶନ କରିବାରେ ସମର୍ଥ ହେବ, ତେବେ ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ହେବ ନାହିଁକି ? ବୋଧହୁଏ, ପୂର୍ବଜନ୍ମରେ ମୁଁ ଅନେକ ପୁଣ୍ୟ ସଞ୍ଚୟ କରିଛି ନିଶ୍ଚୟ । ନୋହିଲେ ପରମାତ୍ମା ପରଂବ୍ରହ୍ମ ପ୍ରଭୁଙ୍କ ଦର୍ଶନର ସୁଯୋଗ ମୋତେ ମିଳିଥା'ନ୍ତା କିପରି ? ମୁଁ ପୂର୍ବ ଜନ୍ମରେ ବିଶେଷ କିଛି ପୁଣ୍ୟ କରିନାହିଁ । ନୋହିଲେ ମୋତେ ସାରାଜୀବନ ଏପରି ହୀନସ୍ଥାନ ଦାସବୃତ୍ତିରେ କଟାଇବାକୁ ପଡ଼ୁଥା'ନ୍ତା କାହିଁକି ? ମୁଁ ପୂର୍ବ ଜନ୍ମରେ ସେପରି କିଛି ପୁଣ୍ୟକର୍ମ କରିନାହିଁ ଏବଂ ଏ ଜନ୍ମରେ ମଧ୍ୟ ଭଲକାମରେ କାଳ ଅତିବାହିତ କରୁ ନାହିଁ; ତେଣୁ ମୋ' ପରି ପାପୀକୁ ଭଗବାନ୍ ଦର୍ଶନ ଦେବେ କିପରି ?

ପୁଣି ସେ ମନେ ମନେ ଭାବିଲେ—କେବଳ ଯେ ପୁଣ୍ୟାତ୍ମା ପ୍ରଭୁଙ୍କ ଦର୍ଶନ ପାଇବାରେ ସମର୍ଥ ହେବେ ଏ କଥା ନୁହେଁ । କାରଣ ଦକ୍ଷ ସନ୍ତରଣକାରୀ ନଦୀର ସୋତ କାଟି ପାର ହୋଇଯାଏ ଏବଂ ବୃକ୍ଷ ତୃଣ ମଧ୍ୟ ପାଣି ସୁଅର ଧକ୍କା ସହି ସହି ଦିନେ ନା ଦିନେ ନଦୀ ପାର ହେବାକୁ ସମର୍ଥ ହୋଇଥାଏ । ସେହିପରି ସଂସାରର କାଳନଦୀ ମଧ୍ୟରେ ମନୁଷ୍ୟ ଅନେକ ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇ, ଈଶ୍ୱରଙ୍କ ଅପାର କରୁଣା ବଳରେ ସଂସାରରୁ ଉଦ୍ଧାର ପାଇଯାଏ । ଠିକ୍ ସେହିପରି କୁଶଳ ସନ୍ତରଣକାରୀ ମଧ୍ୟ ବେଳେ ବେଳେ ମଝି ନଦୀରେ ବୁଡ଼ିଯାଇ ପ୍ରାଣ ହରାଏ ; ତେଣୁ ମନେହୁଏ—ଭଗବାନଙ୍କ କୃପା କଣିକା ପାଇବାର କୌଣସି ଧରାବନ୍ଧା ନିୟମ ନାହିଁ । ବୋଧହୁଏ ସେହି ନ୍ୟାୟରେ ଆଜି ମୁଁ ପ୍ରଭୁଙ୍କ ଦର୍ଶନ କରିବାରେ ସମର୍ଥ ହେବି । ମୁଁ ନିଶ୍ଚିତ ଭାବରେ ପ୍ରଭୁଙ୍କ ଦୟାର ପାତ୍ର ହେବାକୁ ଯାଉଛି । ମୋ' ଆଖି ଆଗରେ ଯେଉଁ ଶୁଭ ଶକୁନଗୁଡ଼ିକ ଦେଖାଯାଉଛି, ସେଥିରୁ ମନେ ହୁଏ—ମୋର ସୌଭାଗ୍ୟରବି ଉଦୟ ହେବାକୁ ଯାଉଛନ୍ତି । ମୁଁ ନାରଦ ଆଦି ମୁନିମାନଙ୍କ ମୁଖରୁ ପ୍ରଭୁଙ୍କ ମଦନ ମୋହନ ରୂପ ଓ ନିର୍ଭର୍ଗିଠାଣି ସମ୍ପର୍କରେ କେତେଥର ଶୁଣିଛି । ଆଜି ସେହି ମନୋହର ସ୍ୱରୂପର ଅବଲୋକନ ଫଳରେ ମୋର ସମସ୍ତ ପାପ କ୍ଷୟ ହୋଇଯିବ । ମୁଁ କିଛି ସମୟ ପରେ ଯାଇ ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କରି ଆତ୍ମାକୁ ସାର୍ଥକ କରିବି । ତାଙ୍କ ଚରଣସ୍ପର୍ଶ କରିଥିବା ପବିତ୍ର ଧୂଳିରେ ଥରେ ମନଭରି ଲୋଟିଗଲେ, ମୋ' ପାପମୟ ଅଙ୍ଗରେ ପୁଲକ ଜାତ ହେବ ।

ଅକ୍ରୂର ମନେ ମନେ ହର୍ଷିତ ହୋଇ ପୁଣି ଭାବିଲେ—ଆଜି ମୁଁ ଶ୍ରୀକୃଷ୍ଣଙ୍କ ଭୁବନ ମନୋହର ରୂପ ଦର୍ଶନ କରିବି ! ଯେଉଁ ମୁଖମଣ୍ଡଳର ଶୋଭା ଅତ୍ୟନ୍ତ ମନମୋହକ,

ଶୁକଚଞ୍ଚୁ ପରି ନାସିକା, ଦରହାସମୟ ଚଞ୍ଚଳ ମୀନ ସଦୃଶ ଅପରୂପ ନୟନ ଯୁଗଳ ତଥା କଳାଭ୍ରମର ପରି କୁଞ୍ଚିତ କେଶଗୁଚ୍ଛ ଦର୍ଶନ କରି ଆଜି ମୁଁ ମୋର ଏ' ପାପନୟନର ପିପାସା ଦୂର କରିବି ।

ଆହା ! ଆଜି କଂସ ମୋ' ପ୍ରତି ଅଶେଷ ଦୟା ପ୍ରଦର୍ଶନ କରିଛି । ଉପରକୁ ଅମଙ୍ଗଳ ବୋଲି ମନେ ହେଉଥିବା କାର୍ଯ୍ୟ ଅନେକ ସମୟରେ ମଙ୍ଗଳଜନକ ହୋଇଥାଏ । ଆଉ କେବେ କେବେ ମଙ୍ଗଳ ଉଦ୍ଦେଶ୍ୟରେ ଆରମ୍ଭ କରାଯାଇଥିବା କାର୍ଯ୍ୟ ଅମଙ୍ଗଳ ସିଦ୍ଧ ହୁଏ । କଂସ ମୋତେ ଦୁଷ୍ଟ ବୁଦ୍ଧିରେ ଗୋପପୁରକୁ ପଠାଇଛି; କିନ୍ତୁ ତାହା ମୋ' ପକ୍ଷରେ ମଙ୍ଗଳମୟ ହୋଇଛି । ଯୋଗୀମାନେ ନାନାପ୍ରକାର କଠୋର ତପସ୍ୟା ଓ ଯାଗଯଜ୍ଞ ଫଳରେ ଯେଉଁ ପାଦପଦ୍ମର ଦର୍ଶନ କରିପାରୁ ନାହାନ୍ତି, ସେହି ଚରଣ କମଳ ମୁଁ ଆଜି ଏ' ପାପନୟନରେ ଅବଲୋକନ କରିବି । ଯାହାଙ୍କ ପାଦପଦ୍ମର ନଖକୋଣରୁ ତ୍ରିଲୋକ ପାବନୀ ଗଙ୍ଗା ଜାତ ହୋଇଛନ୍ତି, ସେହି ରକ୍ତାଭ ପାଦ ନଖର ମନୋରମ ଶୋଭା ଦେଖି ମୁଁ ମୋର ନୟନ ଯୁଗଳକୁ ସାର୍ଥକ କରିବି । ଯେଉଁ ପାଦକମଳର ସେବାରେ ବ୍ରହ୍ମା, ଶିବ ତଥା ଇନ୍ଦ୍ର ଆଦି ତେତିଶ କୋଟି ଦେବତା ମଗ୍ନ ଯାଇଛନ୍ତି, ସେହି ପାଦପଦ୍ମର ସ୍ପର୍ଶରେ ବୃନ୍ଦାବନର ପ୍ରତ୍ୟେକ ଧୂଳିକଣା- ସୌଭାଗ୍ୟବନ୍ତ ହୋଇଛି । ସେହି ଗୋରଜଧୂଳିରେ ବ୍ରଜକାମିନୀଙ୍କ କୁଚକୁମ୍ଭ ରଞ୍ଜିତ ହୋଇଛି ।

ଭଗବାନ୍ ଅପ୍ରାକୃତ, ଅବ୍ୟକ୍ତ, ଅଚିନ୍ତ୍ୟ ତଥା ଅନନ୍ତ ଅଟନ୍ତି । ସେ ସାଧୁସନ୍ଥ, ଭକ୍ତଜନତା ତଥା ସମାଧିସ୍ଥ ଯୋଗୀମାନଙ୍କ ମନକାମନା ପୂରଣ କରିବା ପାଇଁ ସଂସାରରେ ନରରୂପେ ବିଚରଣ କରୁଛନ୍ତି । ସେ ଅନେକ ଅବତାର ଧାରଣ କରି ଭୂଭାର ନିବାରଣ କରିଛନ୍ତି । ଆଜି ସେହି ତ୍ରିଭୁବନ ସୁନ୍ଦର ଶ୍ୟାମସୁନ୍ଦରଙ୍କୁ ଦେଖି, ଜୀବନରେ ସର୍ବଶ୍ରେଷ୍ଠ ସୁନ୍ଦର ବସ୍ତୁ ଦେଖିବାର ସୌଭାଗ୍ୟ ଅର୍ଜ୍ଜନ କରିବି ।

ଏହି ଜଗତ୍ କାର୍ଯ୍ୟକାରଣ ରୂପ ତ୍ରିବିଧ ଅହଙ୍କାରରେ ନିର୍ମିତ; କିନ୍ତୁ ନିଖିଳ-ରସାମୃତ ସିନ୍ଧୁ ନନ୍ଦନନ୍ଦନ ସକଳ ପ୍ରପଞ୍ଚରହିତ, ଜ୍ଞାନଗମ୍ୟ ଅଟନ୍ତି । ତଥାପି ସେ ବୃନ୍ଦାବନର କୁଞ୍ଜକୁଟୀରରେ ପରିଭ୍ରମଣ କରି ବିବିଧ ଖେଳ କୌତୁକ ଦେଖାଇବା ସଙ୍ଗେ ସଙ୍ଗେ ଗୋପାଙ୍ଗନାମାନଙ୍କ ଗୃହରେ ଅବୋଧ ଶିଶୁଭାବରେ ନାନାକ୍ରୀଡ଼ା କରୁଛନ୍ତି । ପରମାତ୍ମା ପରମେଶ୍ୱର ଅଜନ୍ମା ହୋଇଥିଲେ ହେଁ କେବଳ ଜଗତର ହିତସାଧନ ନିମିତ୍ତ ଜନ୍ମଗ୍ରହଣ କରି, ଦୁଃଖମୟ ସଂସାରକୁ ମଙ୍ଗଳମୟ କରାଇଛନ୍ତି ।

ଯେଉଁ ବାଣୀ ଶ୍ରୀକୃଷ୍ଣ ଶ୍ୟାମସୁନ୍ଦରଙ୍କ ଲୀଳାମୃତ ଉପାଖ୍ୟାନ ବର୍ଣ୍ଣନ ନ କରି କେବଳ ପରନିନ୍ଦା ତଥା କୂଟକପଟ ପୂର୍ଣ୍ଣ ବଚନ କହୁଛି, ସେ ବାଣୀ ଘୃତହୀନ ଦୁଗ୍ଧ ସଦୃଶ କେବଳ ବାହ୍ୟାଡ଼ମ୍ବର ମାତ୍ର ।

ମୁଁ ନାରଦାଦି ମୁନିମାନଙ୍କ ମୁଖରୁ ଶୁଣିଛି, ଭଗବାନ୍ ସୃଷ୍ଟିର ଆରମ୍ଭରେ ବର୍ଣ୍ଣାଶ୍ରମ ଧର୍ମର ପରିଚାଳନା ନିମିତ୍ତ ନିଜେ ଅବତାର ଗ୍ରହଣ କରନ୍ତି । ସେ ଦେବତା ଓ ମନୁଷ୍ୟମାନଙ୍କ ମଧ୍ୟରେ ସୁଧର୍ମର ରକ୍ଷା ନିମିତ୍ତ ନାନାବିଧ ଆସୁର ତଥା ଉପଯୁକ୍ତାଦି ଦ୍ୱାରା ଜଗତକୁ ପବିତ୍ର କରନ୍ତି । ଏବେ କଂସର ପ୍ରତାପରେ·ସଂସାରରୁ ବର୍ଣ୍ଣାଶ୍ରମଧର୍ମ ଲୋପ ପାଇ ଯାଇଛି । କଂସ ଗୋଟିଏ ପାପାତ୍ମା; ସେ ନରପତି ବେଶରେ ଗୋଟିଏ ଦୁର୍ଦ୍ଦାନ୍ତ ଅସୁର ରୂପେ ସମଗ୍ର ମାନବ ସମାଜକୁ ଉଚ୍ଛନ୍ନ କରିବାରେ ଲାଗିଛି । ଭଗବାନ୍ ପୁରୁଷୋତ୍ତମ ନିଜ ବାଲ୍ୟଲୀଳାରେ ଜଗତକୁ ମଧୁମୟ କରିବା ନିମିତ୍ତ କଂସ ପାଳିତ ମଥୁରାକୁ ତ୍ୟାଗ କରି ବ୍ରଜଭୂମିରେ ନିଜର କ୍ରୀଡ଼ାପ୍ରଦର୍ଶନ କଲେ । ଆଜି ସେହି ଦୟାମୟ ତଥା କରୁଣାସାଗରଙ୍କ ଦର୍ଶନରେ ମୋ' ନେତ୍ର ସଫଳ ହେବ ।

ଯେଉଁ ପରମାତ୍ମା ସାଧୁଜନମାନଙ୍କର ଏକମାତ୍ର ଆଶ୍ରୟ, ଯାହାଙ୍କ ପାବନ ଲୀଳାମୃତ ଗାନରେ ଭକ୍ତଜନତା ଆପଣାର ଜୀବନକୁ ସାର୍ଥକ କରୁଛନ୍ତି ସେହି ମହିମାମୟ ଗୋପରଞ୍ଜନ, ମନମୋହନ, ଶ୍ରୀକୃଷ୍ଣଙ୍କ ଦର୍ଶନରେ ଆଜି ମୋ' ମାନବଜୀବନ ସଫଳ ହେବ ; ତେଣୁ ମୋ' ଆଖି ଆଗରେ ବହୁପ୍ରକାର ଶୁଭଶକୁନ ପ୍ରକଟିତ ହେଉଛି ।

ସୂତ ମୁନି କହିଲେ—ହେ ମୁନିଗଣ, ମହାଭାଗ୍ୟଶାଳୀ ଅକ୍ରୂର ଏହି ପ୍ରକାର ଭେଟେ ମନୋଜ୍ଞ ଚିନ୍ତାରେ ନିଜ ମନକୁ ନିମଜ୍ଜିତ କରାଇ ଗୋପପୁର ଉଦ୍ଦେଶ୍ୟରେ ଅଶ୍ୱମାନଙ୍କୁ ଚଳାଇବାକୁ ଲାଗିଲେ । ସେ ମାର୍ଗ ମଧ୍ୟରେ ଯେଉଁ ମନୋରଥମାନଙ୍କର ସୁଖଦ ସ୍ୱପ୍ନରେ ଅଭିଭୂତ ହୋଇଥିଲେ, ତା'ର ଦିଗ୍‌ଦର୍ଶନ କରାଇ, ମୁଁ ଆପଣମାନଙ୍କୁ କୃତକୃତ୍ୟ କରାଇବ ।

## ଛପ୍‌ପୟ

ଜିନ ଚରନନ କୁଁ ସନତ ଯୋଗିଜନ ହୃଦୟମହିଁ ଧ୍ୟାଓେଁ ।
ଜିନକୁଁ କମଲା ସଦା ହୃଦୟତେ ହରଷି ଲଗାଓେଁ ॥
କମଲ ସରସ ଜେ ଚରନ ଅଜାଦିକ ଦ୍ୱାରା ବନ୍ଦିତ ।
ସବକେ ଆଶ୍ରୟ ପାଇ ହୋହିଁ ପ୍ରାନୀ ଅତି ପ୍ରମୁଦିତ ॥
ତିନ ଚରନନମହିଁ ଜାଇକେ, ଦଣ୍ଡ ସରଷ ହୌଁ ପରୁଙ୍ଗୋ ।
ସୌଁ ଜଗଜୀବନ ସଫଲ ଅବ, ନୟନଗାବମହିଁ କରୁଙ୍ଗୋ ॥

●

# ଅକ୍ରୂରଙ୍କ ମନୋରଥ

ଅଥାବରୂଢ଼ଃ ସପଦୀଶୟୋ ରଥାତ୍
ପ୍ରଧାନପୁଂ ସୋଶ୍ଚରଣଂ ସ୍ୱଲବ୍ଧୟେ ।
ଧିୟା ଧୃତଂ ଯୋଗିଭିରପ୍ୟହଂ ଧ୍ରୁବଂ
ନମସ୍ୟ ଆଭ୍ୟାଂ ଚ ସଖୀନ୍ ବନୌକସଃ ॥

(ଶ୍ରୀ.ଭା. ୧୦ସ୍କ. ୩୮ଅ. ୫ଶ୍ଳୋ)

## ଛପ୍ପୟ

ସହସା ରଥତେଂ ଉତରି ଅଶ୍ରୁଜଲ ପାଦ୍ୟ ଚଢ଼ାଉଁ ।
ହିୟ ଲଗାଇ ହରି ଲେହୁଁ ଲପଟି ଚରନନମହୁଁ ଜାଉଁ ॥
ଜାନ ଶତ୍ରୁକୋ ଦୂତ ଅନାଦର କରହିଁ ନ ଗିରିଧର ।
ଜାନତ ସବକେ ଭାବ ସର୍ବଗତ ହରି ବିଶ୍ୱମ୍ଭର ॥
ମଧୁର ମଧୁର ମୁସକାୟ ମମ, ରାମକୃଷ୍ଣ କର ଗହିଁଗେ ।
କୋକିଲ କୂଜିତ କଣ୍ଠତେଂ, କାକା କାକା କାହିଗେ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ପଥ ମଧ୍ୟରେ ଯାଉଥିବା ସମୟରେ ଅକ୍ରୂର ମନେ ମନେ ଭାବିଲେ—ମୁଁ ଯେତେବେଳେ ଦୂରରୁ ଦାମୋଦର ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବି, ସେତେବେଳେ ହଠାତ୍ ରଥରୁ ଓହ୍ଲାଇ ପଡ଼ିବି । ଯେଉଁ ଚରଣକୁ ଯୋଗିଜନମାନେ ସଦା ଧ୍ୟାନରେ ସ୍ମରଣ କରୁଛନ୍ତି, ସେହି ପ୍ରଧାନ ପୁରୁଷ ପରମେଶ୍ୱର ରାମକୃଷ୍ଣଙ୍କ ଚରଣ କମଳରେ ପ୍ରଣାମ କରିବି, ତା'ପରେ ଶ୍ରୀକୃଷ୍ଣଙ୍କର ବନବାସୀ ସଖା-ମାନଙ୍କୁ ପ୍ରଣାମ କରି ନିଜ ଜୀବନକୁ ଧନ୍ୟ କରିବି ।

ବସ୍ତୁର ପ୍ରାପ୍ତିରେ ଯେତେ ସୁଖ ମିଳିଥାଏ, ତା'ଠାରୁ ଅଧିକ ସୁଖ ମିଳେ—ସେହି ବସ୍ତୁର ଚିନ୍ତନରେ । ମିଷ୍ଟାନ୍ନ ଖାଇବାଠାରୁ ତାକୁ ପାଇବାର ସୁଖ ଅଧିକ ହୋଇଥାଏ । ଠିକ୍ ସେହିପରି ମିଳନଠାରୁ ମିଳନର ଇଚ୍ଛା ଅଧିକ ଆନନ୍ଦପ୍ରଦ ହୁଏ । ମିଳନର ଆନନ୍ଦ କ୍ଷଣକ ମାତ୍ରେ ବିଲୀନ ହୋଇଯାଏ, ମାତ୍ର ମିଳନର ଚିନ୍ତା ଦୀର୍ଘକାଳ ପର୍ଯ୍ୟନ୍ତ ଆନନ୍ଦ

ହେଇଥାଏ । ଏଇଥିପାଇଁ ରସଶାସ୍ତ୍ରରେ ମିଳନ ଅପେକ୍ଷା ବିରହାବସ୍ଥାକୁ ଅଧିକ ମହତ୍ତ୍ୱ ଦିଆଯାଇଛି । ଉତ୍କଣ୍ଠା ଫଳରେ ରସାନୁଭବ ଅଧିକ ଫଳପ୍ରଦ ହୋଇଥାଏ ।

ପ୍ରିୟଜନଙ୍କ ସାକ୍ଷାତ ହୋଇନାହିଁ କିମ୍ବା ସାକ୍ଷାତ୍ ହୋଇଥିଲେ ହେଁ ଘନିଷ୍ଠ ପରିଚୟ ହୋଇନାହିଁ, ଏହି ସମୟରେ ଯେଉଁ ପ୍ରତୀକ୍ଷା ତାହାକୁ ଉତ୍କଣ୍ଠା କୁହାଯାଏ । ସେହି ସମୟ ମଧ୍ୟରେ ପ୍ରିୟବ୍ୟକ୍ତିର କାଳ୍ପନିକ ସ୍ୱରୂପ ପ୍ରେମିକାର ଆଖି ଆଗରେ ରୂପେଲି ପରଦାର ଛବି ପରି ଭାସିଉଠେ ଅଥବା ଗୁରୁଜନଙ୍କ ମୁଖରୁ ପ୍ରିୟଙ୍କ ସମ୍ବନ୍ଧରେ ଯାହା ଯାହା ଶୁଣିଥାଏ, ତାହାକୁ ମନ ମଧ୍ୟରେ ଚିନ୍ତନ କରି ପ୍ରେମିକା ଆନନ୍ଦରେ ନିଜତ୍ୱ ହରାଇ ବସେ । ସେ ସେହି ସ୍ୱରୂପ ବ୍ୟତୀତ ଅନ୍ୟ କିଛି ଚିନ୍ତା କରି ପାରେନାହିଁ । କେବଳ ତା'ର ପ୍ରିୟଜନଙ୍କ ସମ୍ବନ୍ଧରେ ଚିନ୍ତା କରି ମନେ ମନେ କହି ହେଉଥାଏ—ତାଙ୍କ ସହିତ ଦେଖାହେଲେ, ଏପରି କହିବି, ତାଙ୍କୁ ଏପରି ଭାବରେ ସ୍ୱାଗତ ଜଣାଇବି ଇତ୍ୟାଦି, ଇତ୍ୟାଦି ।

ଏ ପ୍ରକାର ମନୋରଥ ହିଁ ହେଉଛି—ଅତ୍ୟନ୍ତ ସୁଖପ୍ରଦ । ସେହି ମୁହୂର୍ତ୍ତ ଜୀବନର ସର୍ବଶ୍ରେଷ୍ଠ ମୁହୂର୍ତ୍ତ ରୂପେ ପରିଗଣିତ ହୁଏ ।

ସୂତମୁନି କହିଲେ—ହେ ମୁନିଗଣ, ଅକ୍ରୂର ମଥୁରାରୁ ବାହାରି ଯେତିକି ଯେତିକି ଅଗ୍ରସର ହେଉଥାଆନ୍ତି, ତାଙ୍କ ମନରେ ସେତିକି ମନୋରଥ ଉଙ୍କି ମାରୁଥାଏ । ସେ ଆଜଯାଏଁ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରି ନଥିଲେ । କେବଳ ନାରଦ ଆଦି ମୁନିଋଷିଙ୍କ ମୁଖରୁ ତାଙ୍କ ସମ୍ବନ୍ଧରେ ଯାହାକିଛି ଶୁଣିଲେ, ସେହି ବିଷୟରେ ଧ୍ୟାନ କରୁଥିଲେ ।

ସେ ଭାବିଲେ—ମୁଁ ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ରଥରୁ ଡେଇଁପଡ଼ି ନବଜଳଧର ଆଭା ଯୁକ୍ତ ଶ୍ୟାମସୁନ୍ଦରଙ୍କ ପାଖକୁ ଆଗ୍ରହ ସହକାରେ ଦଉଡ଼ିଯିବି । ସେତେବେଳେ ସେ ସାଙ୍ଗ ମେଳରେ ହୁଏତ ଖେଳୁଥିବେ କିମ୍ବା ସ୍ନାନ ସାରି ଚନ୍ଦନ କସ୍ତୁରୀ ଅଙ୍ଗରେ ବୋଳି ହୋଇ ମାଆଙ୍କ ପାଖରେ ଅଳିକରି ସରଲବଣୀ ଖାଇ ଆନନ୍ଦିତ ହେଉଥିବେ । ହୁଏତ ସେ ଆନନ୍ଦରେ ତ୍ରିଭଙ୍ଗ ଠାଣିରେ ଉଭା ହୋଇ ମଧୁମୟ ତାଳରେ ମୁରଲୀ ବଜାଉଥିବେ । ମୁଁ ଯଦି ଗୋଧୂଳି ବେଳା ଆଗରୁ ଗୋପପୁରରେ ପହଞ୍ଚିଯାଏ, ତେବେ ଗାଈଙ୍କ ପଛରେ ବେଣୁ ଶିଙ୍ଗା ବଜାଇ ବୁଲୁଥିବା ଏବଂ ଗୋରଜରେ ଜରଜର ହୋଇଥିବା ଗୋବିନ୍ଦଙ୍କୁ ଦେଖି ନୟନ ପବିତ୍ର କରିବି । ଯଦି ମୁଁ ତା'ପରେ ପହଞ୍ଚେ, ତେବେ ହୁଏତ ଦେଖିବାକୁ ପାଇବି—ନନ୍ଦକୁମର ସଖାମେଳରେ ଗୋପଦାଣ୍ଡରେ ଖେଳୁଛନ୍ତି ଅଥବା ଗାଈ ଦୋହନରେ ମାତିଛନ୍ତି । ଯେଉଁ ପରମାତ୍ମାଙ୍କ ପାଦପଦ୍ମରେ ଧ୍ୟାନ ଲଗାଇ ମୁନିଋଷି ସହସ୍ର ସହସ୍ର ବର୍ଷ ସମାଧିରେ ବସିଛନ୍ତି, ସେହି ଶ୍ୟାମସୁନ୍ଦରଙ୍କର ଚରଣ କମଳ ଦର୍ଶନ କରି ନିଜ ଜୀବନକୁ କୃତାର୍ଥ କରିବି । ଯାହାଙ୍କ ଚରଣ କମଳରେ ଧ୍ୟାନ ଲଗାଇ ବ୍ରହ୍ମା, ଶିବ ଓ

ଓ ସୁରେଶ୍ୱର ଆଦି ଦେବଗଣ ସର୍ବଦା ଅମୃତଭୋର ହୋଇ ରହୁଛନ୍ତି; ଆଜି ମୁଁ ସେଠାରେ ପହଞ୍ଚି, ସେହି ତ୍ରିଲୋକ ବନ୍ଦିତ ପାଦପଦ୍ମର ଦର୍ଶନରେ ଆତ୍ମାକୁ କୃତାର୍ଥ କରିବି । ଯାହାଙ୍କର ମନୋହର ରୂପ 'ଅବାଙ୍ମନସଗୋଚର', ସେହି ଅଲୌକିକ ରୂପ ରାଶିର ଦର୍ଶନରେ ମୁଁ ଯୋଗିମାନଙ୍କ ଅପେକ୍ଷା ସୌଭାଗ୍ୟବାନ୍ ହେବାର ସୁଯୋଗ ପାଇବି । ଯାହାଙ୍କ ସ୍ୱରୂପକୁ ବ୍ରହ୍ମାଦି ଦେବଗଣ, ନାରଦାଦି ମୁନିଗଣ ଦିବ୍ୟ ଦୃଷ୍ଟିରେ ଅବଲୋକନ କରୁଛନ୍ତି, ସେହି ଭୁବନମୋହନ ରୂପସମ୍ପଦକୁ ମୁଁ ଆଜି ମୋର ଏହି ଚର୍ମ ଚକ୍ଷୁରେ ଦର୍ଶନ କରିବି ।

ମୁଁ ଯେତେବେଳେ ମନରୁ ସମସ୍ତ ପ୍ରକାର ଅହଂଭାବ ଦୂର କରି ତାଙ୍କ ଶ୍ରୀଚରଣରେ ପଡ଼ିଯିବି, ସେ ନିଶ୍ଚିତ ଭାବରେ ମୋ' ଶିରରେ ସୁକୋମଳ କରକମଳ ସ୍ଥାପନ କରି, ମୋତେ ଭବବନ୍ଧନରୁ ମୁକ୍ତ କରିବେ । ଭଗବାନଙ୍କୁ ଶ୍ରଦ୍ଧାରେ ଯେଉଁ ବ୍ୟକ୍ତି ପତ୍ର, ପୁଷ୍ପ, ଫଳ ଓ ଜଳ ଅର୍ପଣ କରେ, ସେ ତାହାକୁ ଆଦରରେ ଗ୍ରହଣ କରନ୍ତି । ତା'ଫଳରେ ଭବବନ୍ଧନରେ ପଡ଼ିଥିବା ପ୍ରାଣୀ ବନ୍ଧନ ମୁକ୍ତ ହୋଇଥାଏ । ସୁରେଶ୍ୱର ଇନ୍ଦ୍ର ପ୍ରଭୁଙ୍କ ପାଦପଦ୍ମରେ ଶ୍ରଦ୍ଧାଯୁକ୍ତ ଅର୍ଘ୍ୟ ନିବେଦନ କରିବା ଫଳରେ, ଦୁର୍ଭାଗ୍ୟ ବଶତଃ ହରାଇଥିବା ସ୍ୱର୍ଗ ସିଂହାସନ ଲାଭ କରିଥିଲେ । ବଳିରାଜା ମଧ୍ୟ ସେହି ଚରଣ କମଳର ଦର୍ଶନରେ ମୁକ୍ତିଲାଭ କରି ଶାଶ୍ୱତ ସୁଖର ଅଧିକାରୀ ହୋଇଥିଲେ ।

ବ୍ରଜବିହାରୀ ଶ୍ରୀକୃଷ୍ଣ ବନକ୍ରୀଡ଼ା, ରାସୋଲ୍ଲାସ ଅଥବା ବ୍ରଜବାଳାଙ୍କ ସହିତ ମଧୁମୟ କ୍ରୀଡ଼ା ପରେ ଯେଉଁ କରକମଳରେ ଶ୍ରମଝାଳ ପୋଛୁଥିବେ ସେହି କରରେ ମୋ' ମସ୍ତକକୁ ସ୍ପର୍ଶ କଲେ, ମୁଁ ମନୁଷ୍ୟ ଜନ୍ମର ସକଳ ସୁଫଳ ଲାଭ କରିବି । ସେ କେବେ-ହେଲେ ମୋତେ କଂସର ଦୂତ ବୋଲି ମନେ କରି ତିରସ୍କାର କରିବେ ନାହିଁ । ସେ କ'ଣ ମୋ' ମନୋଗତଭାବ ଜାଣି ନଥିବେ ? ଯେ ପ୍ରାଣିମାନଙ୍କ ହୃଦୟ କମଳରେ ସାକ୍ଷୀରୂପେ ବିରାଜମାନ କରିଛନ୍ତି, ତାଙ୍କୁ ମନୁଷ୍ୟର ହୃଦ୍‌ଗତ ଭାବନା ଅଜଣା ରହିବ କେମିତି ?

ମୁଁ ପ୍ରଥମେ ଯାଇ ତାଙ୍କ ପାଦପଦ୍ମରେ ଲୋଟି ପଡ଼ିବି । ସେ ଦୟାର୍ଦ୍ର ଚିତ୍ତରେ ମୋ' ମସ୍ତକ ଉପରେ ହାତ ରଖିଦେବାମାତ୍ରେ, ମୁଁ ଭୂମିରୁ ଉଠିପଡ଼ି, ଚକ୍ଷୁର ପ୍ରେମାଶ୍ରୁର ଧାରା ଛୁଟାଇ, ମୁଖପୋଡ଼ି ସେହିଠାରେ ଛିଡ଼ା ହୋଇ ରହିବି । ସେ ନିଶ୍ଚିତ ଭାବରେ ମଧୁମୟ ହାସ୍ୟଛଟା ନିଜର ମୁଖମଣ୍ଡଳରେ ଖେଳାଇ ଦେଇ, ମୋ' ଆଡ଼କୁ ଦିବ୍ୟଦୃଷ୍ଟି ପ୍ରଦାନ କରିବେ । ସେହି ଦିବ୍ୟଦୃଷ୍ଟି ଫଳରେ ମୋ' ଅଙ୍ଗରୁ ଜନ୍ମଜନ୍ମାନ୍ତରର ପାପତାପ ଦୂର ହୋଇଯିବ ଏବଂ ମୁଁ ପରମାନନ୍ଦ ସୁଖ ସାଗରରେ ନିମଜ୍ଜିତ ହୋଇଯିବି ।

ଚରାଚର ନାଥ ପରମେଶ୍ୱର ହେଉଛନ୍ତି-- ବିଶ୍ୱର ଏକମାତ୍ର ସ୍ୱାମୀ, ସେ ସଂସାରର ଦୁଃଖ ଦୂର କରିବା ପାଇଁ ଯଦୁକୁଳରେ ଅବତାର ଗ୍ରହଣ କରିଛନ୍ତି । ଏହି ସାମାଜିକ

ସମ୍ପର୍କ ଅନୁସାରେ ମୁଁ ତାଙ୍କର ଆତ୍ମୀୟ ସ୍ୱଜନ । ସେ ଏକଥା ଜାଣି ମୋତେ ନିଶ୍ଚୟ ସମାଦର କରିବେ । ସେ ନିଶ୍ଚୟ ନିଜର ବିଶାଳ ଭୁଜ ଦଣ୍ଡରେ ମୋତେ ଟେକି ଉଠାଇ ହୃଦୟରେ ଆଲିଙ୍ଗନ କରିବେ । ତାଙ୍କର ବିପୁଳ ବକ୍ଷରେ ମୋର ଶରୀର ଲାଗିଲେ, ଏ ଦେହରୁ ସମସ୍ତ ପାପ ଦୂର ହୋଇଯିବ । ଅଗ୍ନି ଜ୍ୱାଳାରେ ଯେପରି ସୁବର୍ଣ୍ଣ ସମସ୍ତ କାଳିମା ଦୂର କରିଦେଇ, ତେଜସ୍ୱୀର ହୋଇଉଠେ, ସେହିପରି ତାଙ୍କର ସ୍ପର୍ଶ ଫଳରେ ମୋର ଏ ପାପମୟ ଶରୀର ବିଶୁଦ୍ଧ ହୋଇଯିବ ।

ଭଗବାନ ଶ୍ରୀକୃଷ୍ଣ ମୋତେ ବଳପୂର୍ବକ ଆଲିଙ୍ଗନ କରିବା ସମୟରେ, ମୁଁ ମୋର ଶରୀରକୁ ଶିଥିଳ କରି ଦେବି । ତାଙ୍କ ଶରୀରର ଭାର ବହନ କରି ନପାରି, ମୁଁ ଯେତେବେଳେ ଟଳମଳ ହୋଇ ପଡ଼ିଯିବି, ସେ ମୋତେ ଧରି ପକାଇ କହିବେ—କ'ଣ ଆପଣ ପଡ଼ିଗଲେ କି ପିତୃବ୍ୟ ? ତାଙ୍କ ମୁଖରୁ ମୁଁ ଏପରି ମଧୁମୟ ବଚନ ଶୁଣି ଆନନ୍ଦରେ ପୁଲକିତ ହୋଇ ଉଠିବି । ମୋର ମନେ ହେଉଛି—ସେତେବେଳେ ମୁଁ ପୃଥିବୀର ସର୍ବଶ୍ରେଷ୍ଠ ସୌଭାଗ୍ୟବାନ୍ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ ହୋଇଯିବି ।

ଅବଶ୍ୟ ଲୋକମାନେ ସାଂସାରିକ ଜୀବନରେ ଅନେକ ପଦପଦବୀରେ ଭୂଷିତ ହୋଇଥା'ନ୍ତି ; କିନ୍ତୁ ପରମାତ୍ମା ପରମପୁରୁଷ ଭଗବାନଙ୍କ ଦ୍ୱାରା ଯେ ଆଦରର ପାତ୍ର ନ ହୁଏ, ତା ଜୀବନ ଧିକ । ତା'ର ସାମାଜିକ ମାନ, ସମ୍ମାନ, ଆଦର, ଅଭ୍ୟର୍ଥନା ସମସ୍ତ ବ୍ୟର୍ଥ ।

ଅବଶ୍ୟ ଦେଖିବାକୁ ଗଲେ—ପରମାତ୍ମା କାହାରି ପ୍ରତି ପାତର ଅନ୍ତର କରନ୍ତି ନାହିଁ । ତାଙ୍କ ଦୃଷ୍ଟିରେ ସମସ୍ତେ ସମାନ । କୀଟରୁ ବ୍ରହ୍ମ ପର୍ଯ୍ୟନ୍ତ ତାଙ୍କ ଦୃଷ୍ଟିରେ ଏକ ଓ ଅଭିନ୍ନ । ତଥାପି ସେ ଶରଣାଗତ ଜନପ୍ରତି ବିଶେଷ କୃପାପ୍ରଦର୍ଶନ କରିଥା'ନ୍ତି । ଯେଉଁମାନେ କଳ୍ପବୃକ୍ଷ ମୂଳକୁ ଯାଆନ୍ତି, ସେମାନଙ୍କର ମନକାମନା ପୂର୍ଣ୍ଣ ହୋଇଥାଏ । ଯେଣୁ ସେ ହେଉଛନ୍ତି—କଳ୍ପବୃକ୍ଷ, ସମସ୍ତ ଯାଦବ ତାଙ୍କର କୃପା ଲାଭର ଅଧିକାରୀ ଅଟନ୍ତି । ସେ ଯେଉଁଠାରେ ମୋତେ ଦେଖିବେ, ନିଶ୍ଚୟ ମୋତେ ଆଦର କରି କହିବେ—ପିତୃବ୍ୟ, ଆପଣ ଥକି ପଡ଼ିଥିବେ, ଚାଲନ୍ତୁ, ହାତଗୋଡ଼ ଧୋଇ ବିଶ୍ରାମ କରନ୍ତୁ । ସରଳ ବାଳକ ଯେପରି ପିତାଙ୍କ ପଛେ ପଛେ ସହଜ ଭାବରେ ଚାଲେ, ମୁଁ ସେହିପରି ତାଙ୍କ ପଛେ ପଛେ ଅନୁଗମନ କରିବି । ସେ ମୋତେ ଘରକୁ ନେଇଯାଇ ଅନେକ ଭାବରେ ସ୍ୱାଗତ ସତ୍କାର କରିବେ । ସେ ନିଜ ଆତ୍ମୀୟ ସ୍ୱଜନଙ୍କ କୁଶଳ ପ୍ରଶ୍ନ ପଚାରିବା ସଙ୍ଗେ ସଙ୍ଗେ କଂସର ଦୁର୍ବ୍ୟବହାର ସମ୍ପର୍କରେ ଜାଣିବାକୁ ଚାହିଁବେ । ମୁଁ ମଧ୍ୟ ଗୁରୁଙ୍କ ପ୍ରଶ୍ନ ଅନୁସାରେ ଶିଷ୍ୟ ଉତ୍ତର ଦେଲାପରି, ମୁଁ ତାଙ୍କୁ ଗୋଟି ଗୋଟି ପ୍ରଶ୍ନର ଉତ୍ତର ପ୍ରଦାନ କରିବି ।

ସୂତମୁନି କହିଲେ—ହେ ମୁନିଗଣ, ଅକ୍ରୂର ମାର୍ଗ ମଧ୍ୟରେ ଏହିପରି ଭାବରେ ଚିନ୍ତା କରି କରି ଯାଇ ସୂର୍ଯ୍ୟାସ୍ତ ସମୟରେ ଗୋପପୁରରେ ପହଞ୍ଚିଲେ ।

ଏହା ଶୁଣିବାମାତ୍ରେ ମହାମୁନି ଶୌନକ ପଚାରିଲେ—"ହେ ମୁନିବର, ଆପଣ ଏହି ଅଧ୍ୟାୟର ଆରମ୍ଭରେ କହିଛନ୍ତି—ଅକ୍ରୂର ପ୍ରାତଃକାଳରେ ମଥୁରାରୁ ବାହାରିଥିଲେ । ସେ ମଧ୍ୟ ପାଦଗତରେ ଆସୁ ନଥିଲେ; ତାଙ୍କର ବାହନ ଥିଲା—ରାଜକୀୟ ରଥ । ମଥୁରାରୁ ଗୋପ ମାତ୍ର ଅଳ୍ପ କେତେଦୂର ବାଟ । ସେଥିରେ ସକାଳୁ ବାହାରି ସନ୍ଧ୍ୟାବେଳେ ପହଞ୍ଚିଲେ କପରି ?

ମୁନି ଶୌନକଙ୍କ ପ୍ରଶ୍ନ ଶୁଣି କହିଲେ—ସୂତ ମହର୍ଷି—ହେ ମୁନିବର, ଅକ୍ରୂର ଶ୍ରୀକୃଷ୍ଣଙ୍କ ପ୍ରେମରେ ଏତେ ବିଭୋର ହୋଇ ଉଠିଥିଲେ ଯେ, ତାଙ୍କର ବାହ୍ୟଜ୍ଞାନ ରହିଲା ନାହିଁ ; ତେଣୁ ଘୋଡ଼ାମାନଙ୍କ ଲଗାମ୍ ଶିଥିଳ କରି ଦେଲେ । ତେଣୁ ଘୋଡ଼ାମାନେ ମନଇଚ୍ଛା ଦୌଡ଼ିବାକୁ ଲାଗିଲେ । ତାଙ୍କ ଇଚ୍ଛାନୁସାରେ ସେମାନେ ଏଣେତେଣେ ଧାଇଁବା ପରେ ଦିବସର ତୃତୀୟ ପ୍ରହରବେଳକୁ ଅକ୍ରୂର ପ୍ରକୃତିସ୍ଥ ହୋଇ ଘୋଡ଼ାମାନଙ୍କୁ ଗୋପପୁର ଆଡ଼କୁ ଚଳାଇ ଆଣିଲେ । ସେ ବ୍ରଜଭୂମିରେ ପହଞ୍ଚିବାମାତ୍ରେ ରଥରୁ ଡେଇଁପଡ଼ି ଶ୍ରୀକୃଷ୍ଣଙ୍କ ପଦଚିହ୍ନ-ଅଙ୍କିତ ଭୂମିରେ ଲୋଟିପଡ଼ିଲେ । ହେ ମୁନିବର, ମୁଁ ଏହି ପ୍ରସଙ୍ଗ ଆପଣମାନଙ୍କୁ ବିସ୍ତାର ପୂର୍ବକ କହୁଛି, ଆପଣମାନେ ଶ୍ରବଣ କରନ୍ତୁ ।

## ଛପ୍‌ପୟ

ହରି ହିତ ସରବସୁ ତଜହିଁ ଭକ୍ତବର ତେଇ ତ୍ୟାଗୀ ।
ଅପନାଓଁ ଅଖିଲେଶ ଜାଇ ସୋ ଜଗ ବଡ଼ଭାଗୀ ॥
ଘରକେ ଭୀତର ପକରି ହାତ କହି ହରି ଲେ ଜାଓଁ ।
କରି ସବ ବିଧି ସତ୍‌କାର ପ୍ରେମତେଁ ପାୟ ଧୁଆଓଁ ॥
ଜାତ କୁଶଲ ପୂଛହୁଁ ଜବହିଁ, ତବ କଛୁ ନାହୁଁ ଛପାଉଁଗୋ ।
ଦୁଷ୍ଟ କଂସ ବ୍ୟବହାର ସବ, ସର୍ବେଶ୍ବରହିଁ ବତାଉଁଗୋ ॥

# ଅକ୍ରୂରଙ୍କ ଦ୍ୱାରା ଭଗବାନ ଶ୍ରୀକୃଷ୍ଣଙ୍କ ଚରଣ ଚିହ୍ନ ଦର୍ଶନ

ଦେହଂଭୃତାମିୟାନର୍ଥୋ ହିତ୍ୱା ଦମ୍ଭଂ ଭିୟଂ ଶୁଚମ୍ ।
ସନ୍ଦେଶାଦ୍ ଯୋ ହରେର୍ଲିଙ୍ଗଦର୍ଶନ ଶ୍ରବଣାଦିଭିଃ ॥

(ଶ୍ରୀଭା ୧୦ସ୍କ. ୩୮ଅ. ୨୭ଶ୍ଳୋ)

## ଛପ୍ପୟ

ଯେଁ। ବନ୍ଧୁଷଧି ଅକ୍ରୂର ମନୋରଥ କରତ ଜାତ ମଗ ।
ନରଖେ ଭୁଭରେ ଅବନ ମାଁହୁଁ ଶ୍ରୀନନ୍ଦନନ୍ଦନ ପଗ ॥
ବଜ୍ର, କମଲ, ଯବ ଅଙ୍କ ଧ୍ୱଜ୍ୟ ଚହ୍ନନତେଁ ଚହ୍ନିତ ।
ଦେଖ୍ନି ଜୀବନମୂର ଭୟେ ଅତଶୟ୍ ଆନନ୍ଦିତ ॥
ନରଖତ ପ୍ରଭୁ ପଦ ରଜ ମୁଣ୍ଡତ, ଚୁରତ କୂଦ ରଥତେଁ ପରେ ।
ତନୁ ପୂଲକତ ଗଦ୍‌ଗଦ ହୃଦୟ୍,ନୟ୍ନ ନେହଜଳ ତେଁ ଭରେ ॥

ଶ୍ରୀଶୁକଦେବ କହୁଛନ୍ତି—ହେ ରାଜନ୍, କଂସର ଆଦେଶ ଅନୁସାରେ ଅକ୍ରୂର ମଥୁରାନଗରୀରୁ ବାହାର ହୋଇ ବ୍ରଜଭୂମିକୁ ଯାଉଥିବା ସମୟରେ, ଶ୍ରୀକୃଷ୍ଣଙ୍କ ଲୀଳା, ଚିନ୍ତନ ଓ କୀର୍ତ୍ତନରେ ଏତେଦୂର ଅଭିଭୂତ ହୋଇ ପଡ଼ିଥିଲେ ଯେ, ତାଙ୍କର ବାହ୍ୟଜ୍ଞାନ ରହିଲା ନାହିଁ । ସେ ଭୟ, ଦମ୍ଭ, ଅଭିମାନ, ଅଗ୍ରହ ସମସ୍ତ ପ୍ରକାର ବାହ୍ୟଜ୍ଞାନ ହରାଇ ନିଜକୁ ଶ୍ରୀକୃଷ୍ଣମୟ କରିଦେଲେ । ଏହାହିଁ ହେଉଛି—ଦେହଧାରୀ ମନୁଷ୍ୟମାନଙ୍କର ପରମ ଗତି ।

ଦେହ ମଧ୍ୟରେ ବଳ ବା ଶକ୍ତି ରହିଥିଲେହେଁ, ତାହା ବାହାରକୁ ଦେଖାଯାଏ ନାହିଁ । ସେହିପରି ମନ ମଧ୍ୟରେ ପ୍ରେମ ପରିପୂର୍ଣ୍ଣ ହୋଇଥିଲେ ମଧ୍ୟ ତା'ର ବହିଃପ୍ରକାଶ ହୁଏନାହିଁ । ଚୁମ୍ବକର ସ୍ପର୍ଶରେ ଯେପରି ଲୌହ, ଚନ୍ଦ୍ରର ଉଦୟରେ ଚନ୍ଦ୍ରକାନ୍ତମଣି ଆକର୍ଷିତ ହୋଇଥାଏ, ଠିକ୍ ସେହିପରି ପ୍ରିୟତମଙ୍କର କୌଣସି ବସ୍ତୁର ଅବଲୋକନରେ ପ୍ରେମାସ୍ପଦଙ୍କ ହୃଦୟରେ ଭାବୋଦ୍ଦୀପନ ହୋଇଥାଏ । ପ୍ରେମୀଙ୍କର ଯେ କୌଣସି ଚିହ୍ନ କିମ୍ବା ତା'ର ସୌସାଦୃଶ୍ୟ ବସ୍ତୁ ଦେଖିଲେ ପ୍ରେମାସ୍ପଦଙ୍କର ହୃଦୟରେ ଆଲୋଡ଼ନ ସୃଷ୍ଟି

ହୋଇଥାଏ । ବୀଣାର ସୁକୋମଳ ଧ୍ୱନି ଶୁଣି ମୃଗୁଣୀ ଆତ୍ମବିସ୍ମୃତ ହୋଇ ଯାଉଥିବା ସମୟରେ ମତ୍ତ ନିର୍ଦ୍ଦିକାର ଭାବରେ ଛୁରା ହୋଇ ଯାଚି ପାଣ୍ଡୁଳ କରୁଥାଏ ।

ସୂତମୁନି କହିଲେ—ହେ ମୁନିଗଣ, ମୁଁ ବାରମ୍ବାର କହୁଛି ଏବଂ ପୁଣି ମଧ୍ୟ କହୁଛି ଯେ, ପ୍ରିୟଦର୍ଶନର ସ୍ମୃତିରେ ଯେଉଁ ଆନନ୍ଦ ମିଳେ, ମିଳନରେ ସେ ସୁଖ ଅନୁଭୂତ ହୁଏନାହିଁ । ପ୍ରେମିକର ଚଳନ୍ତ ପ୍ରେମାସ୍ପଦର ହୃଦୟରେ ଆନନ୍ଦର ଅଲୌକିକ ହିଲ୍ଲୋଳ ଖେଳି ଯାଇଥାଏ । ସମଗ୍ର ସଂସାର ତାଙ୍କୁ ପ୍ରେମମୟ ବୋଧହୁଏ । ସେହି ସ୍ମୃତିରେ ସେ ଆତ୍ମବିଭୋର ହୋଇ ବାହ୍ୟଜ୍ଞାନ ହରାଇ ବସେ ।

ଅକ୍ରୂରଙ୍କ ମନରେ ଶ୍ରୀକୃଷ୍ଣଙ୍କ ପଦଚିହ୍ନ ଦର୍ଶନର ଯେଉଁ ଅପୂର୍ବ ହିଲ୍ଲୋଳ ଖେଳି ଯାଇଥିଲା, ତା'ର ଇୟତ୍ତା ନାହିଁ । ସେ ସେହି ସ୍ମୃତିରେ ବିଭୋର ହୋଇ ଉଠିଥିଲେ । ଏତିକବେଳେ ଭୁବନ ଭାସ୍କର ଅସ୍ତାଚଳ ଶିଖରରେ ବିରାଜମାନ କରିଥିଲେ । ଧୀରେ ଧୀରେ ଅନ୍ଧକାର ସମସ୍ତ ଜଗତକୁ ଆବୋରି ନେବା ମୁହୂର୍ତ୍ତରେ, ଚନ୍ଦ୍ରଙ୍କର ନିର୍ମଳ ଜ୍ୟୋତ୍ସ୍ନା ଭୂମଣ୍ଡଳରେ ବିଚ୍ଛୁରିତ ହୋଇ ଉଠିଲା । ରଥର ଗତି ଯେତିକି ଯେତିକି ବୃଦ୍ଧି ପାଉଥିଲା, ଅକ୍ରୂରଙ୍କ ହୃଦୟରେ ପ୍ରେମମୟ ଶ୍ରୀକୃଷ୍ଣଙ୍କ ସୁଖଦ ସ୍ମୃତି ସେତିକି ସେତିକି ଉଦ୍‌ବେଳିତ ହୋଇ ଉଠୁଥିଲା ଏବଂ ତାଙ୍କର ଦଶା ସେତିକି ସେତିକି ଦୟନୀୟ ହୋଇ ପଡ଼ୁଥିଲା । ତାଙ୍କର ସେହି ଦୟନୀୟ ଅବସ୍ଥାକୁ ଅଧିକ ସମୟ ସୂର୍ଯ୍ୟ ଦେଖି ନ ପାରି, ଅସ୍ତାଚଳ ଗହ୍ୱରରେ ଆତ୍ମଗୋପନ କଲେ ।

ଏତିକବେଳେ ଅକ୍ରୂରଙ୍କ ଦୃଷ୍ଟି ଗୋଟିଏ ଚମତ୍କୃତ ବସ୍ତୁ ଉପରେ ପଡ଼ିଲା । ବ୍ରଜଭୂମିର ପରମପାବନ ଧୂଳିରେ ସେ ଦେଖିବାକୁ ପାଇଲେ ଶ୍ରୀକୃଷ୍ଣଙ୍କର ଚରଣ ଚିହ୍ନ । ସେହି ପଦଚିହ୍ନକୁ ଧରଣୀରାଣୀ ହୃଦୟରେ ଧାରଣ କରି ପ୍ରମୁଦିତ ହୋଇ ଉଠୁଥିଲେ । ସତେଅବା ହରିତ ତୃଣ ଛଳରେ ତାଙ୍କ ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା । ଅବନୀ ଉପରେ ବଜ୍ର, ଅଙ୍କୁଶ, ଧ୍ୱଜ, କମଳ, ଯବ, ଆଦି ମନୋଜ୍ଞ ଚିହ୍ନ ଫୁଟି ଉଠୁଥିଲା । ସେ ଚିହ୍ନଗୁଡ଼ିକୁ ଦେଖିବାମାତ୍ରେ ଅକ୍ରୂର ଉଚ୍ଛ୍ୱସିତ କଣ୍ଠରେ କହିଲେ—ଆହା, ଏହାହିଁ ହେଉଛି—ମୋ' ପ୍ରାଣାଧାରଙ୍କର ଚରଣ ଚିହ୍ନ । ଏହି ଚରଣ ଚିହ୍ନକୁ ଇନ୍ଦ୍ରାଦି ଦେବଗଣ ନିଜ ନିଜ ମୁକୁଟରେ ଧାରଣ କରିବା ପାଇଁ ବ୍ୟାକୁଳ ହେଉଛନ୍ତି ।

ହେ ମୁନିଗଣ, ସେହି ପଦଚିହ୍ନଗୁଡ଼ିକ ଦେଖିବାମାତ୍ରେ ଅକ୍ରୂର ଭାବାବେଶରେ ବିଭୋର ହୋଇ ଉଠିଲେ । ତାଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲା । ଧାରାଶ୍ରାବଣ ପରି ତାଙ୍କ ନୟନଯୁଗଳରୁ ପ୍ରେମାଶ୍ରୁ ଝରିଲିତ ହେବାକୁ ଲାଗିଲା । ସେ ଅବିଳମ୍ବରେ ସେହି ମୁହୂର୍ତ୍ତରେ ରଥ ଉପରୁ ତଳକୁ ଡେଇଁ ପଡ଼ିଲେ । ସେ ଆନନ୍ଦ ସାଗରରେ ନିମଜ୍ଜିତ ହୋଇ, ନିଜର ପଦମର୍ଯ୍ୟାଦାକୁ ଭୁଲି, ସେଇଠି ଧୂଳିରେ ଲେଟି ପଡ଼ିଲେ । ହା ! କୃଷ୍ଣ,

ହା ମାଧବ ! ହା ଗୋପୀବଲ୍ଲଭ !! କହି ବାରମ୍ବାର ସେହି ଚରଣ ଚହ୍ନକୁ ଅବଲେହନ କରିବାକୁ ଲାଗିଲେ । ସେ ସେହି ବ୍ରଜଧୂଳିରେ ଲୋଟି କ୍ଷଣକ ପାଇଁ ଆତ୍ମବିସ୍ମୃତ ହୋଇ ଉଠିଲେ ଏବଂ ସ୍ମୃତି-ସୁଧା ପାନରେ ତଦ୍‌ଭାବଭାବିତ ହୋଇ ନୃତ୍ୟ କରିବାକୁ ଲାଗିଲେ ।

କିଛିକ୍ଷଣ ପରେ ଗୋ-ବତ୍ସମାନଙ୍କର ହମାରଡ଼ି, ଗୋପାଳ ବାଳକମାନଙ୍କର ମୁଖର୍‌ବ ତଥା ଶିଙ୍ଗାବେଣୁସ୍ୱନ ଶୁଣି ମନେ ମନେ ଭାବିଲେ--ଆରେ, ମୁଁ କ'ଣ କେତେବେଳୁ ଏଠାରେ ପଡ଼ି ରହିଛି । ଏହା ମଧ୍ୟରେ ଗୋଦୋହନକାଳ ଆସି ଉପସ୍ଥିତ ହୋଇ ଗଲାଣି । ବୋଧହୁଏ, ଶ୍ୟାମସୁନ୍ଦର ମୋତେ ଗୋଶାଳାର ଦ୍ୱାର ଦେଶରେ ଦର୍ଶନ ଦେବେ । ସେ ଯେତେବେଳେ ଶ୍ରେଷ୍ଠ ଶ୍ରେଷ୍ଠ ବାଛୁରିମାନଙ୍କୁ ଟାଣି ଆଣି ଅନ୍ୟତ୍ର ବାନ୍ଧୁଥିବେ, ସେ ଦୃଶ୍ୟ କେଡ଼େ ମନୋରମ ହେଉ ନଥିବ ! ମୁଁ ଗୋପାଳଙ୍କ ଦର୍ଶନ ଠିକ୍ ଗୋ-ବତ୍ସଙ୍କ ମେଳରେ କରି, ଇହଜନ୍ମରୁ ମୁକ୍ତିଲାଭ କରିବ ।

ଅକ୍ରୂର ତଳେ ପଡ଼ିଥିବା ସମୟରେ ଘୋଡ଼ାମାନେ ଛୁଡ଼ା ହୋଇଗଲେ । ରଥ ଅଟକି ଗଲା । ତା'ପରେ ସେ ଧୂଳି ଧୂସରିତ ଶରୀରରେ ତଳୁ ଉଠିପଡ଼ି ରଥ ଦଉଡ଼ି ହାତରେ ଧରି ପଦବ୍ରଜରେ ଅଗ୍ରସର ହେଲେ ।

ସୂତମୁନି କହିଲେ—ହେ ମୁନିଗଣ ! ଏହାହିଁ ହେଉଛି - ମାନବ ଜନ୍ମର ସାର୍ଥକତା । ଶ୍ରୀକୃଷ୍ଣଙ୍କ ସ୍ମରଣରେ ଯାହାଙ୍କର କ୍ଷଣମାତ୍ର ବ୍ୟୟିତ ହୁଏ, ସେ ମନୁଷ୍ୟ ଧନ୍ୟ ! ଅକ୍ରୂର କାୟମନୋବାକ୍ୟରେ ନିଜକୁ ଶ୍ରୀକୃଷ୍ଣଙ୍କ ସ୍ମରଣ ରୂପକ ଆନନ୍ଦସାଗରରେ ନିମଜ୍ଜିତ କରାଇ ଯେଉଁ ଅଲୌକିକ ସୁଖର ଅଧିକାରୀ ହୋଇଥିଲେ, ତାହା ହେଉଛି, ମନୁଷ୍ୟ ଜନ୍ମର ସାର୍ଥକତା । ଏହାପରେ ରାମକୃଷ୍ଣଙ୍କ ସହିତ ଅକ୍ରୂରଙ୍କ ଦର୍ଶନ ଓ ଆଲୋଚନା ସମ୍ପର୍କରେ ମୁଁ ଆପଣମାନଙ୍କୁ ଯଥାକ୍ରମେ ବର୍ଣ୍ଣନାକରି ଶୁଣାଇବି । ଆପଣମାନେ ନିବିଷ୍ଟଚିତ୍ତରେ ସେହି ପ୍ରସଙ୍ଗ ଶ୍ରବଣ କରନ୍ତୁ ।

## ଛପ୍‌ପୟ

ପାୟୋ ଶ୍ରୀଅକ୍ରୂର ଜଗତମହଁ ନର ଜୀବନ ଫଲ ।
ଭର ଭର ହୃଦ କୀ ସ୍ୱାଦ୍ ନେହମହଁ ଅତଶୟ ବହୁଲ ॥
ପଲ ପଲ ଛିନ ଛିନ ସମୟ ସୁମିର ଶ୍ରୀଶ୍ୟାମ ବିତାୟୋ ।
ଜଗ ଜୀବନ କୋ ସାର ସନ୍ତନ୍‌ନ ଜିହ୍ନୀ ବତାୟୋ ।
ଚରନ ଚହ୍ନ ପ୍ରଭୁ କେ ପରସି, ମଦମାତେ ସେ ହ୍ୱୈ ଗୟେ ।
କଛୁ ସଚେତ ହ୍ୱୈ ହାଁକି ରଥ, ନନ୍ଦଗାଁଓ କୂଁ ଚଲି ଦୟେ ॥



# ଅକ୍ରୂର ଓ ରାମ-କୃଷ୍ଣ

ଦଦର୍ଶ କୃଷ୍ଣଂ ରାମଂଚ ବ୍ରଜେ ଗୋଦୋହନଂ ଗତୌ ।
ପୀତନୀଲାମ୍ବରଧରୌ ଶରଦମ୍ବୁରୁହେକ୍ଷଣୌ ॥

(ଭା ୧୦ସ୍କ । ୩୮ଅ । ୨୮ଶ୍ଳୋ)

**ଛପ୍ପୟ**

ଗୋଶାଳମହଁ ପହୁଁଚ ରାମ ଅରୁ ଶ୍ୟାମ କହାରେ ।
ନୀଲ ପୀତ ପଟ ପହନ ଖଡ଼େ ଗୋଚରେ ଅରୁ କାରେ ॥
କାନନ କୁଣ୍ଡଲ କଇତ ଲଲିତ ବନମାଲ ମନହର ।
ଦୋନୋ ଅତଇ ସୁଧର ସୁଖଦ ଶୋଭିତ ଅତ ସୁନ୍ଦର ॥
ଗାୟ ଦୁହାବନ ହିତ ଖରେ, ଜନୁ ସିଁଗାର ଦ୍ୱୈ ତନୁ ଧରେ ।
କର ଦରଶନ ଅକ୍ରୂର ଜୀ, ଦଣ୍ଡ ସରସ ମହୁପେ ପରେ ॥

ଶ୍ରୀ ଶୁକଦେବ କହୁଛନ୍ତି—ରାଜନ୍, ଅକ୍ରୂର ଗୋପପୁରରେ ଉପସ୍ଥିତ ହୋଇ ଗୋଦୋହନ କରୁଥିବା ସମୟରେ ବଳରାମ ଓ ଶ୍ରୀକୃଷ୍ଣଙ୍କୁ ଅବଲୋକନ କରିଥିଲେ । ସେ ଦୁହେଁ ଯଥାକ୍ରମେ ନୀଳ ଓ ପୀତବସ୍ତ୍ର ପରିଧାନ କରିଥିଲେ । ଶରତ୍କାଳୀନ କମଳ ସଦୃଶ ଦୁହିଙ୍କର ନେତ୍ର ବିକଶିତ ହୋଇଥିଲା ।

ଯାହାଙ୍କର ମନୋହର ମୂର୍ତ୍ତି ଆମ ହୃଦୟ ସିଂହାସନରେ ଆସୀନ, ଯାହାଙ୍କ ମଧୁର ମୂର୍ତ୍ତିର ଅବଲୋକନରେ ଆମ ନୟନ ଚିର ତୃଷିତ, ତାଙ୍କର ମନୋଜ୍ଞ ସ୍ୱରୂପ ଅବଲୋକନ କରିବାମାତ୍ରେ, ଆନନ୍ଦରେ ଆମ ଶରୀର ଝଟୁଳା ପଡ଼େ । ତା'ଫଳରେ ଶରୀର ନିଜର ଭାର ବହନ କରିବାରେ ଅସମର୍ଥ ହୋଇଥାଏ ଏବଂ ମନର ଦଶା ମଧ୍ୟ ବିଚିତ୍ର ହୋଇଯାଏ । ପ୍ରିୟତମଙ୍କ ମିଳନରେ ଯେଉଁ ଆନନ୍ଦ ଜାତ ହୋଇଥାଏ, ତାହାକୁ ଭାଷାରେ ପ୍ରକାଶ କରାଯାଇପାରେ ନାହିଁ ।

ସୂତମୁନି କହିଲେ—ହେ ମୁନିଗଣ ! ଶ୍ରୀକୃଷ୍ଣଙ୍କ ଚରଣଚିହ୍ନ ଦେଖିବା ମାତ୍ରେ ଅକ୍ରୂର ଭାବାବେଗରେ ସେହି ବ୍ରଜଧୂଳିରେ ଅନେକ ସମୟ ପର୍ଯ୍ୟନ୍ତ ଗଡ଼ିବାରେ ଲାଗିଲେ । ତା'ପରେ ସନ୍ଧ୍ୟା ହେବାମାତ୍ରେ ସେ ସଚେତ ହୋଇ ପାଦଗତିରେ ଯାଇ ଗୋପଦାଣ୍ଡରେ

ପହଞ୍ଚିଗଲେ । ସେ ଯାଇ ଦେଖିଲେ— ନନ୍ଦଙ୍କ ଗୋଶାଳାରେ ଲକ୍ଷ ଲକ୍ଷ ଧେନୁ ଓ ବତ୍ସା ବନ୍ଧା ଯାଇଛନ୍ତି ଏବଂ ଗୋପାଳମାନେ ହାତରେ ଛନ୍ଦ ଓ ପାତ୍ରଧରି ଗୋଦୋହନ ଲାଗି ଅପେକ୍ଷା କରି ରହିଛନ୍ତି । ସେମାନଙ୍କ ମଧ୍ୟଭାଗରେ ଉଭା ହୋଇଛନ୍ତି ନୀଳାମ୍ବର ବଳରାମ ଓ ପୀତାମ୍ବରଧାରୀ ଶ୍ରୀକୃଷ୍ଣ । ବଳରାମ ଗୋଟିଏ ଗାଈର ଶିଙ୍ଗକୁ ଧରି ଉଭା ହୋଇଛନ୍ତି ଏବଂ ଅନ୍ୟଜଣେ ଗୋପାଳ ଗୋଦୋହନ ଲାଗି ପ୍ରସ୍ତୁତ ହେଉଛି । ଶ୍ୟାମସୁନ୍ଦର ଗୋଟିଏ ସୁନ୍ଦର ବାଛୁରୀକୁ କୋଳରେ ଧରି ଛିଡ଼ା ହୋଇଛନ୍ତି । ସେ ବାଛୁରୀଟିକୁ ବାରମ୍ବାର ସ୍ନେହରେ ଆଉଁସି ଦେଇ ଗେଲ କରୁଛନ୍ତି । ସେହିଠାରେ ବଡ଼ ବଡ଼ ହାଣ୍ଡିରେ ଦୁଧ ରଖାଯାଇଛି । ଗୋପାଳମାନେ ଗାଈ ଦୁହିଁ ସାରି ସେଠାରେ ଆଣି କ୍ଷୀର ଢାଳିଦେଇ ଯାଉଛନ୍ତି । ଏତିକି-ବେଳେ ଜଣେ ଗୋପାଳ ପାଟିକରି କହିଲା—ଆରେ କାହ୍ନୁ, ତୁ ଯେତେବେଳଯାଏଁ ଏଇଠାରେ ଛିଡ଼ା ହୋଇଥିବୁ, ସେ ପର୍ଯ୍ୟନ୍ତ ଏ ଗାଈ କ୍ଷୀର ଦେବ ନାହିଁ । ଏହା ଶୁଣିବାମାତ୍ରେ ଶ୍ରୀକୃଷ୍ଣ ବାଛୁରୀକୁ ଛାଡ଼ି ଦେଇ, ଗାଈ ଆଗରେ ଯାଇ ଛିଡ଼ା ହେଲେ । ମାରଣା ଗାଈଟା, କାଳେ ଶିଙ୍ଗରେ ଶ୍ରୀକୃଷ୍ଣଙ୍କୁ ଭୂଷିଦେବ, ସେଇଥିପାଇଁ ବଳରାମ ଯାଇ ଶ୍ରୀକୃଷ୍ଣଙ୍କ ପାଖରେ ଛିଡ଼ା ହୋଇଗଲେ । ସ୍ନେହର କି ବିଚିତ୍ରଗତି ! ଭଗବାନ୍ ପ୍ରଭୁତ୍ୱବଳରେ ସମସ୍ତଙ୍କର ପାଳକ ଓ ରକ୍ଷାକର୍ତ୍ତା । କିନ୍ତୁ ସଖା ଭାବରେ ତାଙ୍କର ସୁରକ୍ଷା ପାଇଁ ଭକ୍ତର ଚିନ୍ତା ।

ଯେଉଁ ଅଚିନ୍ତ୍ୟ ଶକ୍ତି ବଳରେ ଶ୍ରୀକୃଷ୍ଣ ଅଘାସୁର, ବକାସୁର, ଷଣ୍ଢାସୁର ପରି ଦୁର୍ଦ୍ଦାନ୍ତ ଅସୁରମାନଙ୍କୁ ସଂହାର କରିଥିଲେ, ଯେ ସାତଦିନ ବ୍ୟାପୀ ଗୋବର୍ଦ୍ଧନ ଗିରିକୁ ଅଙ୍ଗୁଳିରେ ଧାରଣ କରିଥିଲେ, ତାଙ୍କର ପୁଣି ମାରଣା ଗାଈଟା କରିବ କ'ଣ ? କିନ୍ତୁ ବାତ୍ସଲ୍ୟ ସ୍ନେହ ସେସବୁ କିଛି ବୁଝେ ନାହିଁ । ସ୍ନେହ ଓ ପ୍ରେମ ତୁଳନାରେ ଶକ୍ତିର କୌଣସି ମୂଲ୍ୟ ନଥାଏ । ପ୍ରେମୀ ସବୁବେଳେ ତା'ର ପ୍ରେମାସ୍ପଦର ଅନିଷ୍ଟ ଆଶଙ୍କା କରୁଥାଏ । କିନ୍ତୁ ଦେଖାଗଲା—ସେହି ମାରଣା ଗାଈଟା ତା'ର ସ୍ୱଭାବ ପରିବର୍ତ୍ତନ କରି ଶ୍ୟାମସୁନ୍ଦରଙ୍କୁ ଚାଟିବାରେ ଲାଗିଲା । ଏହା ଦେଖି ଦୁଇଭାଇ ଆଶ୍ଚର୍ଯ୍ୟ ହୋଇଗଲେ ।

ଦୁଇଭାଇ ବର୍ତ୍ତମାନ ପୁଙ୍ଗା କିଶୋର ଏବଂ ଯୌବନ ତାଙ୍କ ସୁ-କୋମଳ ଶରୀରକୁ ସ୍ପର୍ଶ କରିବାପାଇଁ ଧୀରେ ଧୀରେ ଆଗେଇ ଆସୁଛି । ତା'ର ସୂଚନା ମିଳୁଛି—ଦୁହିଙ୍କର ଶରୀର ଗଠନରୁ । ଦୁହେଁ ଯାକ ହୃଷ୍ଟପୁଷ୍ଟ, ଦୁହିଙ୍କ ମୁଖମଣ୍ଡଳରୁ ଝରି ପଡ଼ୁଛି ଅମୀୟଝର । ଦୁହିଙ୍କ ମୁଖଶୋଭା ଅବଲୋକନ କରି, ସମଗ୍ର ବ୍ରଜମଣ୍ଡଳର ଆବାଳବୃଦ୍ଧ ଜନତା ମନ୍ତ୍ରମୁଗ୍ଧ ହୋଇଯାନ୍ତି ।

ଦୁଇ ଭାଇଙ୍କ ଶ୍ରୀଚରଣ ଧ୍ୱଜ, ବଜ୍ର, ଅଙ୍କୁଶ ଓ କମଳାଦି ଚିହ୍ନରେ ଚିହ୍ନିତ । ସେହି ପବିତ୍ର ଚିହ୍ନରେ ବ୍ରଜ ଭୂମିକୁ ଅହରହ ପବିତ୍ରତର କରିଲେ, ଦୁଇଭାଇ ବ୍ରଜ ଭୂମିରେ ପଦଚାରଣ କରୁଥିଲେ । ଦୁହିଙ୍କ କଣ୍ଠରେ ମଣିମାଣିକ୍ୟର ମାଳା ଦୋହଲୁଥିବ । ଦୁହିଙ୍କର

ମନୋଜ୍ଞ ଚେହେରା ଦେଖି ବ୍ରଜବାସୀ—ଆବାଲ୍ୟ ବୃଦ୍ଧ ତରୁଣୀ ବିମୁଗ୍ଧ ହୋଇ ଯାଉଥିଲେ ।

ମହାମନା ଅକ୍ରୂର ଦୂରରୁ ଲକ୍ଷ୍ୟ କରି ଦେଖିଲେ—ଜଗତର ଅଧିକାରଣ ପରମେଶ୍ୱର ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହୋଇ, ରାମ-ଶ୍ୟାମ ନାମରେ ଗୋପପୁରରେ ବିଚରଣ କରୁଛନ୍ତି । ନନ୍ଦନନ୍ଦନ ଯେଉଁ ପୀତାମ୍ବର ପିନ୍ଧିଛନ୍ତି, ସେଥିରୁ ସେ ମର୍କତ ଗିରିବର ସଦୃଶ ଶୋଭା ପାଉଛନ୍ତି । ଦୁଇଭାଇ ନିଜ ନିଜର ଅଙ୍ଗ ସୁଷମାରେ ଦଶଦିଗକୁ ଆଲୋକିତ କରୁଛନ୍ତି ।

ଅକ୍ରୂର ଯାହାଙ୍କ ବିଷୟରେ ଏତେ ମନୋରଥ ପୋଷଣ କରି ମଥୁରାପୁରରୁ ଆସିଥିଲେ, ତାହାଙ୍କୁ ଆଖି ଆଗରେ ଦେଖିବାକ୍ଷଣି, ସେ ଆତ୍ମବିଭୋର ହୋଇ ଉଠିଲେ । ସେ ନିଜର ନାମ, ଗୋତ୍ର ଓ ପିତାଙ୍କ ନାମ ଉଚ୍ଚାରଣ କରି ହଠାତ୍ ଶ୍ରୀକୃଷ୍ଣଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ ନିବେଦନ କଲେ । ପରମେଶ୍ୱର ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ତାଙ୍କ ନୟନରୁ ଝର ଝର ହୋଇ ଲୁହ ବହିବାକୁ ଲାଗିଲା । ତାଙ୍କ କଣ୍ଠରୋଧ ହୋଇ ଯାଆନ୍ତେ, ସେ ଗଦ୍‌ଗଦ୍ ବାଣୀରେ ନିଜର ମନୋଭାବ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଭାବାବେଗରେ ମୂର୍ଚ୍ଛିତ ହୋଇଗଲେ ।

ଅକ୍ରୂର ତଳେ ପଡ଼ିଯିବା ଦେଖିବା ମାତ୍ରେ, ଶ୍ୟାମସୁନ୍ଦର ସଙ୍ଗେ ସଙ୍ଗେ ତାଙ୍କର ଶିଙ୍ଗ ଗ୍ରାହ୍ୟ ଦେଇ, ତାଙ୍କ ନିକଟକୁ ଧାଇଁ ଆସିଲେ । ସେ ଅକ୍ରୂରଙ୍କ ନାମ, ଧାମ ଜାଣି ଓ ବେଶ ପୋଷାକ ଦେଖି ସର୍ବାନ୍ତର୍ଯାମୀ ପ୍ରଭୁ ତାଙ୍କୁ ନିଜର ପିତୃବ୍ୟ ଅକ୍ରୂର ବୋଲି ଜାଣି ପାରିଥିଲେ । ସେ ଭୂମିରେ ପଡ଼ିଥିବା ଅକ୍ରୂରଙ୍କୁ ତଳୁ ଉଠାଇ ଆଣି ହୃଦୟରେ ଲଗାଇ ଗାଢ଼ ଆଲିଙ୍ଗନ କଲେ ।

ଅକ୍ରୂର ମନେ ମନେ ଯେଉଁ ଧାରଣା କରି ଆସିଥିଲେ, ଠିକ୍ ଅନୁରୂପ ବ୍ୟବହାର ଶ୍ରୀକୃଷ୍ଣଙ୍କଠାରୁ ପାଇବାମାତ୍ରେ ଆତ୍ମବିସ୍ମୃତ ହୋଇ ଉଠିଲେ । ସେ କୋମଳମତି ଶିଶୁଟିଏ ପରି କହିଁ କହିଁ ହୋଇ କାନ୍ଦିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ବିଶାଳ ବକ୍ଷଦେଶରେ ନିଜକୁ ବିଲୀନ କରାଇ ଦେଲେ ।

ଶ୍ରୀକୃଷ୍ଣ ଅକ୍ରୂରଙ୍କ ହୃଦୟର ଭାବନା ଜାଣିଥିଲେହେଁ ଲୋକବ୍ୟବହାର ବଶତଃ ତାଙ୍କୁ ଆଶ୍ୱସ୍ତ କରାଇ ପଚାରିଲେ—ପିତୃବ୍ୟ, ତୁମ ଦେହ ଧୂଳିରେ ଧୂସର ଦିଶୁଛି କାହିଁକି ? ତୁମେ କ'ଣ ପଥଶ୍ରମରେ ଅବଶ ହୋଇ ପଡ଼ିଛ କି ?

ଶ୍ୟାମସୁନ୍ଦରଙ୍କ ଶ୍ରୀମୁଖରୁ ସୁଧା ବିନିନ୍ଦିତ ମଧୁର ବାଣୀ ଶୁଣିବାପରେ ମଧ୍ୟ ଅକ୍ରୂରଙ୍କ ମୁଖରୁ ପଦେହେଲେ କଥା ବାହାରିଲା ନାହିଁ । ସେ କେବଳ ଗୋଟିଏ ବିସ୍ମିତ ବାଳକ ପରି ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗରୁ ପୃଥକ୍ ହୋଇ କରଯୋଡ଼ି ତାଙ୍କ ସମ୍ମୁଖରେ ଛିଡ଼ା ହୋଇ ରହିଲେ । ଏହି ସମୟରେ ବଳରାମ ଆସି ସେଠାରେ ଉପସ୍ଥିତ ହୋଇଗଲେ ।

ତାଙ୍କୁ ଦେଖିବାମାତେ ଅକ୍ରୂର ତଳେ ସାଷ୍ଟାଙ୍ଗ ପ୍ରଣାମ କରିବାପାଇଁ ଅଗ୍ରସର ହୁଅନ୍ତେ, ବଳରାମ ଧାଇଁଯାଇ ତାଙ୍କୁ କୁଣ୍ଢାଇ ପକାଇଲେ । ତା'ପରେ ସେ ପାଖରେ ଛିଡ଼ା ହୋଇଥିବା ଗୋପାଳମାନଙ୍କୁ କହିଲେ—ତୁମେମାନେ ଛିଡ଼ା ହୋଇଛ କାହିଁକ ? ପିତୃବ୍ୟଙ୍କ ରଥରୁ ଘୋଡ଼ାଙ୍କୁ ଫିଟାଇ ନେଇ ଘାସପାଣି ଦିଅ ଏବଂ ରଥଟିକୁ ଯଥାସ୍ଥାନରେ ରଖାଇଦିଅ ।

ଗୋପାଳମାନେ ଆଜ୍ଞାପାଳନ ଲାଗି ଚାଲିଯିବା ପରେ, ବଳରାମ ଅକ୍ରୂରଙ୍କ ହାତଧରି ନନ୍ଦରାଜାଙ୍କ ନଅରକୁ ନେଇଗଲେ । ଘରେ ପହଞ୍ଚି ସେ ଡ଼ାକ ପକାଇ ରୋହିଣୀ ଓ ଯଶୋଦାଙ୍କୁ ଅକ୍ରୂରଙ୍କ ଆଗମନ ସମ୍ବାଦ ଜଣାଇଦେଲେ । ଅକ୍ରୂର ନନ୍ଦରାଣୀ ଯଶୋଦା ଓ ବଳଦେବଙ୍କ ମାତା ରୋହିଣୀଙ୍କୁ ପ୍ରଣାମ ଜଣାଇବା ସଙ୍ଗେ ସଙ୍ଗେ ନନ୍ଦରାଜାଙ୍କ ବାସଭବନକୁ ମଧ୍ୟ ନମସ୍କାର କରିଥିଲେ ।

ଏହାପରେ ଶ୍ରୀକୃଷ୍ଣ ଓ ବଳରାମ ପିତୃବ୍ୟ ଅକ୍ରୂରଙ୍କ ପାଦ ଧୋଇଦେଇ, ତାଙ୍କୁ ସୁସ୍ୱାଦୁ ମଧୁପର୍କ ପାନ କରାଇଲେ । ସମ୍ମାନିତ ଅତିଥିଙ୍କୁ ଗୋଦାନ ଦେବାର ପ୍ରାଚୀନ ପ୍ରଥା ଥିବାରୁ, ନନ୍ଦରାଜାଙ୍କ ପକ୍ଷରୁ ଗୋଟିଏ ଦୁଗ୍ଧବତୀ ଧେନୁ ଅକ୍ରୂରଙ୍କୁ ପ୍ରଦାନ କରାଯାଇଥିଲା । ତା'ପରେ ନାନାପ୍ରକାର ସୁସ୍ୱାଦୁ ଭୋଜନରେ ଅକ୍ରୂରଙ୍କୁ ଆପ୍ୟାୟିତ କରାଯାଇଥିଲା । ପେଟ ପୂରି ଯାଇଥିଲେ ସୁଦ୍ଧା ଅକ୍ରୂର ଗୋଟିଏ ବିନୀତ ବାଳକ ପରି ଶ୍ୟାମସୁନ୍ଦରଙ୍କ ଦ୍ୱାରା ପରିବେଷିତ ସମସ୍ତ ଅନ୍ନ-ବ୍ୟଞ୍ଜନ ତୃପ୍ତିର ସହିତ ଭୋଜନ କରିଥିଲେ ।

ଭୋଜନ କରିସାରିବା ପରେ ଅକ୍ରୂରଙ୍କୁ ମୁଖବାସ ତାମ୍ବୁଳ ଆଦି ଅର୍ପଣ କରି, ତାଙ୍କୁ ସୁଖଦ ଶେଯରେ ଶୁଆଇ ଶ୍ରୀକୃଷ୍ଣ ଓ ବଳରାମ ତାଙ୍କ ପାଦସେବା କରିଥିଲେ । ପ୍ରଭୁଙ୍କଠାରୁ ଆଦର ଅଭ୍ୟର୍ଥନା ଓ ପଦସେବା ପାଇ ଅକ୍ରୂର ମନେ ମନେ ଭାବିଲେ— ସତେ କ'ଣ ଏହା ମୋ'ର ପୂର୍ବ ସୁକୃତର ଫଳ ? ସ୍ୱୟଂ ସଚ୍ଚିଦାନନ୍ଦ ଭଗବାନ ଯାହାର ପାଦସେବାରେ ବ୍ୟସ୍ତ ତା'ଠାରୁ ଭାଗ୍ୟବାନ୍ ବ୍ୟକ୍ତି ଏ ସଂସାରରେ କିଏ ଥାଇପାରେ ?

ଏହି ସମୟରେ ନନ୍ଦରାଜା ଅକ୍ରୂରଙ୍କ ଆଗମନ ବାର୍ତ୍ତା ଗୋପାଳମାନଙ୍କ ମୁଖରୁ ଶୁଣି ଗୋ-ଗୋଷ୍ଠରୁ ଶୀଘ୍ର ଗୃହକୁ ବାହୁଡ଼ି ଆସିଲେ । ସେ ଗୃହରେ ଉପସ୍ଥିତ ହୋଇ ଦେଖିଲେ ଯେ, ଅକ୍ରୂର ପଲଙ୍କ ଉପରେ ଶୋଇଛନ୍ତି ଏବଂ ରାମକୃଷ୍ଣ ଦୁହେଁ ତାଙ୍କ ପାଦସେବା କରୁଛନ୍ତି । ନନ୍ଦରାଜା ପୁଅ ଦୁହିଁଙ୍କ ଅତିଥି ଚର୍ଚ୍ଚା ଦେଖି ଖୁବ୍ ସନ୍ତୁଷ୍ଟ ହେଲେ । ନନ୍ଦରାଜାଙ୍କ ଉପରେ ଦୃଷ୍ଟି ପଡ଼ିବାକ୍ଷଣି ଅକ୍ରୂର ପଲଙ୍କରୁ ଓହ୍ଲାଇ ଆସିଲେ । ସେ ନନ୍ଦରାଜାଙ୍କୁ ପ୍ରଣାମ ଜଣାଇବା ଆଗରୁ, ନନ୍ଦ ତାଙ୍କୁ କୁଣ୍ଢାଇ ପକାଇ ସ୍ନେହରେ ଆଲିଙ୍ଗନ କରିବାକୁ ଲାଗିଲେ । ଉଭୟଙ୍କର ସ୍ନେହବନ୍ଧନ ଭାବାବେଗରେ ପରିଣତ ହୋଇଗଲା ।

ତା'ପରେ ନନ୍ଦରାଜା ଅକ୍ରୂରଙ୍କୁ କୁଶଳ ପ୍ରଶ୍ନ କରନ୍ତେ, ଅକ୍ରୂର କିଛି ଉତ୍ତର ନ ଦେଇ ନୀରବରେ ଛିଡ଼ା ହୋଇ ରହିଲେ । ନନ୍ଦରାଜା ଅକ୍ରୂରଙ୍କ ନୀରବତାର କାରଣ ଅନୁମାନ କରି କହିଲେ—ଭାଇ, ମୁଁ କ'ଣ ତୁମମାନଙ୍କ ଅବସ୍ଥା ଜାଣେ ନାହିଁ । କଂସେଇ ଘରେ ମେଣ୍ଢାପଲ ରହିଲା ପରି, ତୁମେମାନେ କଂସର ଶାସନରେ କାଳଯାପନ କରୁଛ । ମୁଁ ତ ଆଶ୍ଚର୍ଯ୍ୟ ହେଉଛି—ତୁମେ କଂସର ଅତ୍ୟାଚାର ପୂର୍ଣ୍ଣ ବ୍ୟବହାର ସହ୍ୟ କରି ମଥୁରାରେ ରହୁଛ କପରି ?

ଅକ୍ରୂର ଧୀରେ ଧୀରେ ଉତ୍ତର ଦେଲେ—ହେ ଗୋପପତି, ଆମର ଆଉ ଉପାୟ କ'ଣ ? ଆମମାନଙ୍କ ଭାଗ୍ୟରେ ଏହିପରି ଅତ୍ୟାଚାର ପୂର୍ଣ୍ଣ ଶାସନ ଲେଖା ଅଛି । କପାଳ ଲିଖନକୁ ଆନ କରିବାର ଶକ୍ତି କାହାର ?

ତହୁଁ ନନ୍ଦରାଜା କହିଲେ—ହେ ଅକ୍ରୂର, ଯେଉଁ ବ୍ୟକ୍ତି ନିଜ ଭଉଣୀର ସନ୍ତାନମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରିପାରେ, ତା'ଠାରୁ କ୍ରୂର ବ୍ୟକ୍ତି ଆଉ କିଏ ଅଛି ?

ହେ ମୁନିଗଣ, ଏହିପରି ଭାବରେ ଦୀର୍ଘକାଳ ପର୍ଯ୍ୟନ୍ତ ଅକ୍ରୂର ଓ ନନ୍ଦରାଜାଙ୍କ କଥୋପକଥନ ଚାଲିଲା । ତା'ପରେ ଅକ୍ରୂର ତାଙ୍କୁ ରାତ୍ରି ଭୋଜନ ଲାଗି ପଠାଇ ଦେଇ, ଶ୍ରୀକୃଷ୍ଣ ବଳରାମଙ୍କ ସହିତ ସୁଖଦ ପ୍ରସଙ୍ଗ ଆଲୋଚନାରେ ମାତିଗଲେ ।

## ଛପ୍ପୟ

ମାଧବ ମାଧବ ଲେଖେ ଦୋହିଁ ସତ୍ୱର ତହିଁଁ ଗ ଅଯ୍ୟେ ।
ହରି ବଳପୂର୍ବକ ପକଡ଼ି ପ୍ରେମ ତେଁ ହୃଦୟେ ଲଗାୟେ ॥
ପୁନି ଭେଟେଁ ବଲରାମ କାମ ତଜି ଘର ପେ ଲାୟେ ।
କରି ବଧିବତ୍ ସତ୍କାର ସ୍ୱାଦୁ ଭୋଜନ କରୱାୟେ ॥
ନନ୍ଦ ରାୟ ଭେଟେଁ ଲଲକି, ପୁନି ପୂଛି ସବ୍‌କୀ କୁଶଲ ।
ଗୟେ ନନ୍ଦ ବ୍ୟାଲ୍ କରନ, ବାତ କରେଁ ଘନଶ୍ୟାମ ବଲ ॥



# କଂସର ସନ୍ଦେଶ

ପୃଷ୍ଟୋ ଭଗବନ୍ତା ସର୍ବଂ ବର୍ଣ୍ଣୟାମାସ ମାଧବଃ ।
ବୈରାନୁବନ୍ଧଂ ଯଦୁଷୁ ବାସୁଦେବବଧୋଦ୍ୟମମ୍ ॥

(ଶ୍ରୀ.ଭା. ୧୦ସ୍କ. ୩୯ଅ. ୮ଶ୍ଳୋ)

### ଛପ୍ପୟ

ଶ୍ରୀହରି ପୂଛେଁ ତାତ କହୋ ବ୍ରଜ କୈସେ ଆୟେ ।
ସମାଚାର ଅକ୍ରୂର ଆଦତେଁ ସବହିଁ ସୁନାୟେ ॥
କୃଷ୍ଣଚନ୍ଦ୍ର ମମ କାଲ ଦୁଷ୍ଟ ଯୂହ ସବ କଛୁ ଜାନେ ।
କଂସ କ୍ରୂରତା କରେ ଯାଦବନ ନିବିଡ଼ ମାନେ ॥
ନାରଦତେଁ ତବ ଜନ୍ମକୀ, ସନତ କ୍ରୋଧମହଁ ଭରି ଗୟେ ।
ଭୈୟା ସବୀ କୀ ତବହିଁ, ହତ୍ୟା-ହିତ ଉଦ୍ୟୋଗ ଭୟେ ॥

ଶ୍ରୀଶୁକଦେବ କହୁଛନ୍ତି—ହେ ରାଜନ୍, ଯେତେବେଳେ ଭଗବାନ୍ ଅକ୍ରୂରଙ୍କୁ ତାଙ୍କ ଆଗମନର କାରଣ ପଚାରିଲେ, ସେତେବେଳେ ସେ (ଅକ୍ରୂର) କଂସର କ୍ରୂରତା ତଥା ବସୁଦେବଙ୍କୁ ହତ୍ୟା କରିବାର ସମସ୍ତ ଚକ୍ରାନ୍ତ ସମ୍ପର୍କରେ ଶ୍ରୀକୃଷ୍ଣଙ୍କ ଆଗରେ ବ୍ୟାଖ୍ୟାନ କରିଥିଲେ ।

ଭଗବାନ୍ ଯେତେବେଳେ ଯେପରି ଲୀଳା କରିବାକୁ ଚାହାନ୍ତି, ସେତେବେଳେ ସେ ସେହିପରି ବିଧାନ ରଚନା କରିଥାନ୍ତି । ତାଙ୍କ ଇଚ୍ଛା ବିରୁଦ୍ଧରେ ଯିବାପାଇଁ କାହାରି ଶକ୍ତି ନଥାଏ । ତାଙ୍କ ଲୀଳାର ସମସ୍ତ କର୍ତ୍ତବ୍ୟ ପୂର୍ବରୁ ନିର୍ଦ୍ଧାରିତ ହୋଇଥାଏ । ସେଥିପାଇଁ ସେ ଗୋଟିଏ ନିମିତ୍ତ ମାଧ୍ୟମରେ ସମସ୍ତ କାର୍ଯ୍ୟ ସମ୍ପାଦନ କରନ୍ତି । ଆମେମାନେ ପରମେଶ୍ୱରଙ୍କର କ୍ରୀଡ଼ାର ସାମଗ୍ରୀ । ବାଳକ ଯେପରି କେତେବେଳେ କେଉଁ ଖେଳନାରେ ଖେଳ ଆରମ୍ଭ କରିବ, ତାହା ତାକୁ ହିଁ ଜଣା; ସେହିପରି ପରମାତ୍ମାଙ୍କ ଖେଳର ରହସ୍ୟ ତାଙ୍କୁ ହିଁ ଗୋଚର ।

ସୂତମୁନି କହିଲେ—ହେ ମୁନିଗଣ, ନନ୍ଦରାଜା ରାତ୍ରି ଭୋଜନ ପାଇଁ ଭିତରକୁ ଚାଲିଯିବା ପରେ ଶ୍ରୀକୃଷ୍ଣ ମଧ୍ୟ ବୁଝାଇ ଶୁଝାଇ ବଳରାମଙ୍କୁ ତାଙ୍କ ଶୟନ କକ୍ଷକୁ ପଠାଇ-

ଦେଲେ । ସେ କେବଳ ଅକ୍ରୂରଙ୍କ ପାଖରେ ବସି ତାଙ୍କୁ ପଚାରିଲେ—ପିତୃବ୍ୟ, ମୁଁ ଆପଣଙ୍କ ମଥୁରାର ସମସ୍ତ ଖବର ଶୁଣିବାକୁ ଚାହୁଁଛି । ମଥୁରାରେ ଆମର ସମସ୍ତ ଆତ୍ମୀୟ କୁଶଳରେ ଅଛନ୍ତି ତ ?

ଅକ୍ରୂର ଶ୍ରୀକୃଷ୍ଣଙ୍କ ପ୍ରଶ୍ନ ଶୁଣି କହିଲେ—ଶ୍ୟାମସୁନ୍ଦର, ଆପଣଙ୍କୁ କ'ଣ ବା ଅଜଣା ଯେ ? ମୁଁ ଯଦୁବଂଶର କୁଶଳ ମଙ୍ଗଳ ସମ୍ବନ୍ଧରେ ଆପଣଙ୍କ ଆଗରେ ଅଧିକ ବଖାଣିବି କ'ଣ ?

ତହୁଁ ଶ୍ରୀକୃଷ୍ଣ ହସି ହସି କହିଲେ—ପିତୃବ୍ୟ, ମୁଁ ସବୁକିଛି ଜାଣିଛି । ତଥାପି ଶିଷ୍ଟାଚାର ଦୃଷ୍ଟିରୁ ମୁଁ ଆପଣଙ୍କୁ ଏପରି ପ୍ରଶ୍ନ କରୁଛି । ଆପଣମାନଙ୍କ ମଧ୍ୟରେ କ'ଣ ଘଟୁଛି, ତାହା ମୋ' ନିକଟରେ ଅଛପା ନାହିଁ । ମୁଁ ଜାଣେ, ଯେଉଁ କାଠରେ ଘୁଣ ଲାଗିଯାଏ, ତା'ର ଆଉ ମଙ୍ଗଳ କେଉଁଠି ? ଯେଉଁ କ୍ଷେତରେ ପଙ୍ଗପାଳ ବସି ଯାଆନ୍ତି କିମ୍ବା ଯେଉଁ ଶରୀରକୁ ରାଜଯକ୍ଷ୍ମା ଆକ୍ରମଣ କରେ, ସେଠାରେ କୁଶଳ ମଙ୍ଗଳ ବିଷୟ ପଚାରିବା ଲାଭ କ'ଣ ? କଂସ ଯଦ୍ୟପି ସମ୍ପର୍କରେ ମୋର ମାମୁଁ, ତଥାପି ତାଙ୍କ ଅତ୍ୟାଚାର ଯୋଗୁଁ ଆମ କୁଳରେ କଳଙ୍କ ଲାଗି ଯାଇଛି । ସମୁଦାୟ ଭୋଜ, ଯାଦବ ଓ ସାତ୍ୱତ, ଆଦି ସାତବଂଶ ଦୁଃଖ ସାଗରରେ ନିମଜ୍ଜିତ ହୋଇଛନ୍ତି । ମୁଁ ଏ' ବିଷୟ ସବୁବେଳେ ଚିନ୍ତା କରୁଛି ।

ଅକ୍ରୂର କହିଲେ—ହେ ଶ୍ୟାମଘନ, ମୁଁ ଆପଣଙ୍କୁ ଆଉ କହିବି କ'ଣ ? ଆପଣହିଁ ଆମମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ ।

ଆଖି ଛଳ ଛଳ କରି ଶ୍ରୀକୃଷ୍ଣ କହିଲେ—ମୋ'ଠାରୁ ଅଧିକ ଭାଗ୍ୟହୀନ ଆଉ ଏ ସଂସାରରେ ଅଛି କିଏ ? କେବଳ ମୋର ପାଇଁ ମୋ' ପିତାମାତା, ଭାଇବନ୍ଧୁ, ମିତ୍ର କୁଟୁମ୍ବ, ସମସ୍ତେ ବିପଦ ଘେରରେ ପଡ଼ି ଅଶେଷ ସନ୍ତାପ ଭୋଗ କରୁଛନ୍ତି । ମୋ' ପାଇଁ ମାଆ ତାଙ୍କର ଛଅପୁଅଙ୍କୁ ହରାଇଲେ, ପିତାମାତା କାରାବାସରେ ସଢ଼ୁଛନ୍ତି ! ଆପଣମାନେ ଭାବୁଥିବେ—ମୁଁ ଏଠାରେ ଶାନ୍ତିରେ ରହି ଖେଳକୁଦରେ ଦିନ ବିତାଉଛି, କିନ୍ତୁ ପ୍ରକୃତରେ ତା' ନୁହେଁ । ମୁଁ ସବୁବେଳେ ଆତ୍ମୀୟସ୍ୱଜନଙ୍କ ପାଇଁ ଚିନ୍ତା କରୁଛି, ନାନାପ୍ରକାର ଉପାୟ ଅନୁସନ୍ଧାନ କରୁଛି । ଆଜି ଆପଣଙ୍କୁ ଦେଖି ମୋ' ମନ ଆନନ୍ଦରେ ଉଲ୍ଲସିତ ହୋଇଛି । ଆଚ୍ଛା, କହନ୍ତୁ ତ, କଂସର ଆଖିରେ ଧୂଳିଦେଇ, ଆପଣ ବ୍ରଜପୁରକୁ ଆସିଲେ କପରି ? ଆପଣଙ୍କ ଆଗମନର କାରଣ କ'ଣ ?

ଏହା ଶୁଣିବାମାତ୍ରେ ଆଖିରୁ ଲୁହ ଝରାଇ ଅକ୍ରୂର କହିଲେ—ନନ୍ଦନନ୍ଦନ ! ଆପଣ ଅନ୍ତର୍ଯ୍ୟାମୀ, ଘଟ ଘଟ ବାସୀ । ଆପଣ କ'ଣ ବା ନ ଜାଣନ୍ତି ? ଆପଣଙ୍କ ଆବିର୍ଭାବ ପରେ କଂସ ଭାଇ ବସୁଦେବ ଓ ଭଉଣୀ ଦେବକୀଙ୍କୁ କାରାମୁକ୍ତ କରିଦେଇ, ଗୋଟିଏ ପରେ

ଗୋଟିଏ ଅସୁର ପଠାଇ ଆପଣଙ୍କୁ ମାରିବାପାଇଁ ଯୋଜନା କରିଥିଲେ । ସେ ଜାଣିଥିଲେ—ଆପଣ ନନ୍ଦ-ଯଶୋଦାଙ୍କ ପୁତ୍ର; କିନ୍ତୁ ଏହା ମଧ୍ୟରେ ଦେବର୍ଷି ନାରଦ ଆସି, ଆପଣଙ୍କ ଜନ୍ମ ରହସ୍ୟ ସମ୍ବନ୍ଧରେ ସବୁକଥା କଂସ ଆଗରେ ବଖାଣି ଦେଲେ । ତହୁଁ ଦୁଷ୍ଟ କଂସ ଆପଣଙ୍କ ପିତାମାତାଙ୍କୁ ପୁଣି ବଧ କରିବା ପାଇଁ ଉଦ୍ୟତ ହୋଇଥିଲେ । କିନ୍ତୁ ନାରଦ ଓ ଉଗ୍ରସେନ ତାଙ୍କୁ ସେଥିରୁ ନିବୃତ୍ତ କରାଇଲେ । ତହୁଁ ସେ ପୁଣି ଭାଇ ଓ ଭାଉଜଙ୍କୁ କାରାଗାରରେ ରଖାଇ ଆପଣଙ୍କ ବଧ ନିମିତ୍ତ ପୁଣି ଗୋଟିଏ ନୂଆ କୌଶଳ ରଚନା କରିଛି । ସେ ଏବେ ଦୁନିଆ ଆଖିରେ ଧୂଳି ଦେବାଲାଗି ଗୋଟିଏ ଧନୁଯାତ୍ରା ଆରମ୍ଭ କରିଛି; କିନ୍ତୁ ଆପଣଙ୍କ ବଧ ଲାଗି ଏହା ତାହାର ଏକ ଛଳନା । ଏହି ଯାତ୍ରା ଆଳରେ ସମସ୍ତ ଗୋପାଳଙ୍କ ସମେତ ସେ ଆପଣଙ୍କୁ ମଥୁରାକୁ ଯିବାଲାଗି ନିମନ୍ତ୍ରଣ କରିଛି ଏବଂ ଆପଣଙ୍କୁ ସଙ୍ଗରେ ଘେନି ଯିବା ଲାଗି ମୋତେ ନିଜର ବହୁ ମୂଲ୍ୟ ରଥ ଦେଇ ପଠାଇ ଅଛି ।

ଶ୍ରୀକୃଷ୍ଣ ହସି ହସି କହିଲେ—ତା' ହେଲେ ଆପଣ କଂସର ଦୂତ ହୋଇ ଆସିଛନ୍ତି···!

ଅକ୍ରୂର ଅତ୍ୟନ୍ତ ଦୀନଭାବରେ କରଯୋଡ଼ି କହିଲେ—ଆପଣ ଏହାକୁ ଯେପରି ଅର୍ଥ କରିବେ କରନ୍ତୁ ପଛକେ; କିନ୍ତୁ ମୋର ଇଚ୍ଛା ଆପଣଙ୍କୁ ଅଗୋଚର ନୁହେଁ । ମୁଁ ଆପଣଙ୍କ ଶ୍ରୀଚରଣ ଦାସ ହୋଇ ମଧ୍ୟ ଆପଣଙ୍କ ମୃତ୍ୟୁ ପାଇଁ କପଟ ବେଶ ସାଜି ଗୋପପୁରକୁ ଆସିଛି ।

ଶ୍ରୀକୃଷ୍ଣ ଠୋ' ଠୋ' ହୋଇ ହସି ହସି କହିଲେ—କଂସର ପୁଣି ଏଡ଼େ ସାହସ ? ସେ ମୋତେ କ'ଣ ମାରିବ, ନିଜେ ପ୍ରାଣଭୟରେ ମରି ସାରିଲାଣି ବୋଲି ଜାଣନ୍ତୁ ।

ଏହି ସମୟରେ ବଳଦେବ ଘର ଭିତରକୁ ପଶି ଆସି କହିଲେ—ପିତୃବ୍ୟ, କାଳ ଆସି କଂସର ମୁଣ୍ଡ ଉପରେ ତାଣ୍ଡବନୃତ୍ୟ ଖେଳିଲାଣି । ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ ।

ଶ୍ରୀକୃଷ୍ଣ ବଳଦେବଙ୍କୁ ଦେଖି ପକାଇ ହସି ହସି କହିଲେ—ଭାଇ ! କଂସ ଗୋଟିଏ ଧନୁଯାତ୍ରା ଆୟୋଜନ କରି, ଆମକୁ ନେବାପାଇଁ ପିତୃବ୍ୟଙ୍କୁ ପଠାଇଛି । ଆଚ୍ଛା କହିଲ ଭାଇ, ଆମେ ମଥୁରାକୁ ଯିବା ନା ନାହିଁ ?

ବଳଦେବ କହିଲେ—ହଁ, ହଁ, ନିଶ୍ଚୟ ଯିବା । ଏହା ଏକ ଅପୂର୍ବ ସୁଯୋଗ । ବେଶ୍ ପୁର ମାଳପୁଆ ଆଉ ରାଜକୀୟ ଖାନା ମିଳିବ ଏବଂ ଧନୁଯାତ୍ରା ପରି ଏକ ଆଡ଼ମ୍ବର ପୂର୍ଣ୍ଣ ଉତ୍ସବରେ ଆମେ ଯୋଗଦେବା । ଏପରି ସୁଯୋଗକୁ କେହି କ'ଣ ହାତଛଡ଼ା କରିପାରେ !

ଏହି ସମୟରେ ନନ୍ଦରାଜା ରାତ୍ରି ଭୋଜନ ଶେଷ କରି, ସେଠାରେ ଆସି ଉପସ୍ଥିତ ହେବାମାତ୍ରେ ଅକ୍ରୂରଙ୍କ ସହିତ ଶ୍ରୀକୃଷ୍ଣ କହିଲେ—ବାବା ! ଆପଣ ଜାଣିଲେଣି, ମଥୁରାରୁ ପିତୃବ୍ୟ କାହିଁକି ଆସିଛନ୍ତି ? ଏହା ଆମପକ୍ଷରେ ଏକ ସୁବର୍ଣ୍ଣ ସୁଯୋଗ । ମହାରାଜ କଂସ ଆଗାମୀ ଚତୁର୍ଦ୍ଦଶୀ ତିଥିରେ ଗୋଟିଏ ଅଡ଼ମ୍ବର ପୂର୍ଣ୍ଣ ଧନୁଯାତ୍ରା ଆରମ୍ଭ କରୁଛନ୍ତି । ସେଠାକୁ ଦେଶ ବିଦେଶରୁ ଅନେକ ଖ୍ୟାତନାମା ମଲ୍ଲଯୋଦ୍ଧା ଆସୁଛନ୍ତି । ସେମାନେ କେତେ ପ୍ରକାର ଖେଳ କସରତ୍ ଦେଖାଇବେ । ମହାରାଜ ଆମକୁ ନେବାପାଇଁ ରଥ ପଠାଇଛନ୍ତି । କାଲି ସକାଳୁ ଆମକୁ ନେଇଯିବାପାଇଁ ପିତୃବ୍ୟ ଆସିଛନ୍ତି । ରାଜା କଂସ ମଧ୍ୟ ଆପଣଙ୍କ ସମେତ ଗୋପପୁରର ସମସ୍ତ ଗୋପାଳଙ୍କୁ ନିମନ୍ତ୍ରଣ କରିଛନ୍ତି । ଆପଣ ଯିବେ ନା ବାବା ? ଏହା ଗୋଟିଏ ଅପୂର୍ବ ସୁଯୋଗ । ଆମେ ଦୁଇଭାଇ କେବେ ହେଲେ ମଥୁରା ଦେଖି ନାହୁଁ; ତାପରେ ପୁଣି ଏତେବଡ଼ ଉତ୍ସବ ! କେତେ ଭଲ ଭଲ ଜିନିଷ ଖାଇବାକୁ ମିଳିବ; ତା' ସହିତ ନାନାପ୍ରକାର ଖେଳ କସରତ୍ ଦେଖିବା । ଆମର ଧନୁଯାତ୍ରାରେ ଯୋଗ ଦେବାପାଇଁ ଖୁବ୍ ଇଚ୍ଛା ହେଉଛି । ଆପଣ ଆମ ଦୁଇଭାଇଙ୍କୁ ସେଥିଲାଗି ଅନୁମତି ଦିଅନ୍ତୁ ।

ଶ୍ରୀକୃଷ୍ଣଙ୍କ କଥା ଶୁଣି ନନ୍ଦରାଜା କହିଲେ—ପୁଅ, ତୁମେ ଦୁହେଁ ବଡ଼ ଅଝଟିଆ ହୋଇଛ । ରାଜାଙ୍କ ଦର୍ଶନ ପାଇଁ ଯିବାକୁ ହେଲେ ସେହି ପ୍ରକାର ମୂଲ୍ୟବାନ୍ ଉପହାର ନେବା ଦରକାର । ରାଜା କଂସ ବଡ଼ ପ୍ରତାପୀ । ସେ ପୁଣି ଧନୁଯାତ୍ରା କରୁଛନ୍ତି । ସେଠାକୁ ତୁମେ ଶୂନ୍ୟ ହସ୍ତରେ ଯିବ କିପରି ?

ପିତାଙ୍କ ଉତ୍ତର ଶୁଣି ହସି ହସି ଶ୍ରୀକୃଷ୍ଣ କହିଲେ—ବାବା, ଆମେ ଉପହାର ନେବୁ ନାହିଁ । ଯେଉଁମାନେ ବଳେବଳେ ଯାଇ ରାଜାଙ୍କୁ ଦର୍ଶନ କରନ୍ତି, ସେମାନେ ହୁଏତ ଉପହାର ନେଇ ପାରନ୍ତି; କିନ୍ତୁ ଆମକୁ ତ ନିଜେ ରାଜା ନିମନ୍ତ୍ରଣ କରି, ଯିବାଲାଗି ରଥ ପଠାଇଛନ୍ତି । ତା'ପରେ ଆମେ ଯାଇ ତାଙ୍କ ମଲ୍ଲଯୋଦ୍ଧାଙ୍କ ସହିତ ମଲ୍ଲଯୁଦ୍ଧ କରିବୁ ।

ଏହି ସମୟରେ ଯଶୋଦା ଘରକୁ ପଶି ଆସି ନନ୍ଦଙ୍କୁ ଶୁଣାଇ କହିଲେ—ଶୁଣିଲ ତ ଏ ଉଦଣ୍ଡିଆ କଥା ! ଏ ପୁଣି ଯାଇ ରାଜଧାନୀରେ ମାଲଯୁଦ୍ଧ କରିବେ ? ସେ କ'ଣ ଗାଆଁ ହୋଇଛି କି ? ନାଃ, ନାଃ, ଏ ଦୁହିଁଙ୍କି କେବେ ହେଲେ ଛଡ଼ା ଯିବ ନାହିଁ । ତୁମେ ଯାଇ କାଲି ରାଜାଙ୍କୁ ଯାହା ଭେଟି ଦେବା କଥା ଦେଇ ଆସ······।

ଏହା ଶୁଣିବାମାତ୍ରେ ଅକ୍ରୂର ବାଧା ଦେଇ କହିଲେ—ଦେବି ! ପିଲା ଦୁହେଁ ଏତେ ବଡ଼ ଯାତ୍ରା ଦେଖିବାର ସୁଯୋଗ ପାଇବେ; ତୁମେ ମନା କାହିଁକି କରୁଛ ? ଏଭଳି ସୁଯୋଗ କ'ଣ ସବୁବେଳେ ମିଳିବ ? ଏ ଦୁହେଁ ତ ସୁରିଦିନ ବୁଲିବୁଲି କରି ଫେରି ଆସିବେ···।

ଯଶୋଦା କଥାର ଧାରା ବଦଳାଇ ଦେଇ କହିଲେ—ଅକ୍ରୂର, ତୁମେ ଜାଣ ନାହିଁ ଏ ଦୁହିଙ୍କି । କଥା କଥାକେ କଣ୍ଢାବାଡ଼ରେ ଲୁଗା ପକାଇ କଲ କରିବାରେ ଦୁହେଁ ଯାକ ଓସ୍ତାଦ୍ । ଆମର ଏଠି ଗାଁ ଗହଳର କଥା, ଚଳିଯାଉଛି । ସେଠି ସହର ବଜାର ଜାଗା, କ'ଣ ନାହିଁ କ'ଣ କରିବେ ଏ ଦୁହେଁ । ମୋର ସେଇଥିକ ବଡ଼ ଡର । ଯିବେ ଯଦି ଯାଆନ୍ତୁ; କିନ୍ତୁ ସାବଧାନରେ ଯେମିତ ଚଳିବେ, ସେଥିପାଇଁ ତୁମେ ଦୃଷ୍ଟି ଦେବ ।

ଯଶୋଦାଙ୍କଠାରୁ ଅନୁମତ ପାଇ ରାମକୃଷ୍ଣ ଦୁହେଁ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲେ । ନନ୍ଦରାଜା ମଧ୍ୟ ସେହି ରାତିରେ ପ୍ରଧାନ ପ୍ରଧାନ ଗୋପାଳମାନଙ୍କୁ ଡକାଇ ଆଣି କହିଲେ—ଦେଖ, ଆମ ରାଜା ଗୋଟିଏ ବଡ଼ ଧନୁଯାତ୍ରା କରୁଛନ୍ତି । ସେଥିପାଇଁ ଅକ୍ରୂର ନିମନ୍ତ୍ରଣ କରିବାକୁ ଆସିଛନ୍ତି । ତୁମେମାନେ ରାଜାଙ୍କୁ ଭେଟି ଦେବାପାଇଁ ଦୁଧ, ଦହି, ସର, ଲହୁଣୀ, ଘିଅ, ଗୋଟିକା, ଅଧାମ ଆଦି ନେଇଚାଲ । ରାଜା ଯେପରି ଆମ ଉପହାର ଦେଖି ଖୁସି ହେବେ, ସେଥିପାଇଁ ଦୃଷ୍ଟି ଦେଇ, ତୁମେମାନେ କାଲି ସକାଳୁ ସବୁ ଯୋଗାଡ଼ କରି ବାହାର ପଡ଼ । ସବୁଜିନିଷ ସଜକରି ଆମେ କେତୋଟି ଶଗଡ଼ରେ ସଜାଇ ଦେବା । ଆଗେ ଆଗେ ରଥରେ ବସି ଅକ୍ରୂରଙ୍କ ସହିତ ପୁଅ ଦୁହେଁ ଚାଲିବେ, ଆମେ ସମସ୍ତ ଜିନିଷ ଧରି ପଛେ ପଛେ ଚାଲିବା । ରାଜଧାନୀରେ ଧନୁଯାତ୍ରା ହେଉଛି । ସେଠାରେ ମଧ୍ୟ ଖେଳକସରତ ଦେଖେଇବା ପାଇଁ ଅନେକ ବଡ଼ ବଡ଼ ମଲ୍ଲଯୋଦ୍ଧା ଆସିଛନ୍ତି । ଆମେ ସେ ଖେଳ ମଧ୍ୟ ଦେଖିବା, ଆଉ ଦି' ଚାରିଦିନ ମଉଜ ମଜଲିସ୍‌ରେ କଟାଇ, ରାଜଧାନୀରୁ ଫେରି ଆସିବା ।

ଏକଥାଶୁଣି ଗୋପାଳମାନେ କହିଲେ—ଆପଣଙ୍କ ଆଦେଶ ଅନୁସାରେ ସବୁ ଜିନିଷ କାଲି ସକାଳକୁ ଯୋଗାଡ଼ ହୋଇଯିବ । ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । କାଲି ସକାଳୁ ଆମେ ନାଗରା ବଜାଇ ବ୍ରଜପୁରରେ ଆପଣଙ୍କ ଆଦେଶ ଘୋଷଣା କରିବା ସଙ୍ଗେ ସଙ୍ଗେ ବରାଦ ମୁତାବକ ଜିନିଷ ସଂଗ୍ରହ କରିଦେବୁ ।

ସୂତମୁନି କହିଲେ—ହେ ମୁନିଗଣ ! ଗୋପାଳମାନେ ଏକଥା କହି ନିଜ ନିଜ ଘରକୁ ଚାଲିଗଲେ ଏବଂ ଅକ୍ରୂର ମଧ୍ୟ ଗାଢ଼ ନିଦ୍ରାରେ ଶୋଇ ପଡ଼ିଲେ । ନନ୍ଦ, ଯଶୋଦା, ରୋହିଣୀ ଓ ବଳରାମ ଆଦି ସମସ୍ତେ ଶୋଇ ପଡ଼ିଲେ; ମାତ୍ର ଶ୍ରୀକୃଷ୍ଣ ସାରାରାତି ଚିନ୍ତିତ ହେଲେ ଶୋଇ ପାରିଲେ ନାହିଁ । ସେ ବ୍ରଜ ସୁନ୍ଦରୀମାନଙ୍କ ବିଚ୍ଛେଦ ଦଶା ବିଷୟରେ ଚିନ୍ତାକରି ଅଧୀର ହୋଇ ଉଠିଲେ ।

## ଛପ୍ପୟ

ନାରଦ ବେଦବ୍ୟାସ ସ୍ତୁତି ଯଜ୍ଞକୀ ତାହି ବତାଇ ।
ଭେଜେଁୟା ଲୈବେ ମୋଇ ଦୁଷ୍ଟକୀ ମତ ବୌରାଇ ।

କପଟ ଯଜ୍ଞ କରି ଚହେ ମାରିବେ ତୁମକୁଁ ସ୍ୱାମୀ ।
ବୋଲେ ହରିଅବ—ମରେ ସର୍ବ ଗୋଓଁ ସବ ମାମୀ ॥
ପୁନ ବୋଲେ ନନ୍ଦସୁତେ, ବାବା ! ମଥୁରା ଜାଉଁ ଗେ ।
ଚରଖ ଚଢ଼ୁଁ ଚଙ୍ଗଲ ଲୋଖେଁ, ଗୁଲଗପ୍‌ପା ହୁଁ ଖାଉଁ ଗେ ॥



## ଗୋପାଙ୍ଗନାଙ୍କ ଦୁଃଖ

କାଶ୍ଚିତ୍ତତ୍‌କୃତ ହୃତ୍ତାପଶ୍ୱାସମ୍ଳାନମୁଖଶ୍ରିୟଃ ।
ସ୍ରଂସଦ୍‌ଦୁକୂଲବଲୟକେଶଗ୍ରନ୍ଥ୍ୟଶ୍ଚ କାଶ୍ଚନ ॥
(ଶ୍ରୀଭା୧୦ସ୍କ. ୩୯ଅ. ୧୪ ଶ୍ଳୋ)

### ଛପ୍‌ପୟ

ସୁନ ଗୋପନ ସଁଗ ନନ୍ଦ ଗମନକୀ କରତ ତୟାରୀ ।
ଇତ ବ୍ରଜେଶ୍ୱର ଗଏ କୃଷ୍ଣ ଜହଁ ରାଧା ପ୍ୟାରୀ ॥
କୀଏ ବହୁବିଧି ପ୍ୟାର ହରଷ ରାଧା ନହିଁ ମନମହିଁ ।
ସୁମର ସୁମର ପ୍ରିୟ ବିରହ ଦାହ ହୋଓଁ ସବ ତନମହି ॥
ସମଝାଓଁ ବହୁବିଧି ସଦୟ, ହେଁ ହରି ହୃଦୟ ଲଗାଇକେ ।
ଅଶ୍ରୁ ପୋଁଛ ନିଜ କରନତେଁ, ପୁନ ପୁନ ଧୀର ବଁଧାଇକେ ॥

ଶ୍ରୀଶୁକଦେବ କହୁଛନ୍ତି—ହେ ରାଜନ୍, ଶ୍ରୀକୃଷ୍ଣଙ୍କ ଭାବୀ ବିରହକୁ ସ୍ମରଣ କରିବା ଫଳରେ କେତେକ ଗୋପୀଙ୍କ ମୁଖକମଳ ଉଷ୍ଣଦୀର୍ଘଶ୍ୱାସରେ ମଳିନ ହୋଇଗଲା । କେତେକ ଗୋପୀଙ୍କ ଅଙ୍ଗରୁ ବସ୍ତ୍ର ଓ ଆଭୂଷଣ ଅାଦ ଖସି ପଡ଼ିଲା ଏବଂ ତାହାର ତାହାର କେଶଗ୍ରନ୍ଥି ଫିଟି ଗଲା ଶିଥିଳ ହୋଇଗଲା ।

ଶାଶ୍ୱତ ମିଳନ ହେଉ ଅଥବା ପ୍ରାକୃତ ମିଳନ ହେଉ, ଯେ ମିଳନର ସ୍ୱାଦ ଅନୁଭବ କରିଥାଏ, ତା' ପକ୍ଷରେ ବିଚ୍ଛେଦଜନିତ ଦୁଃଖ ଅତ୍ୟନ୍ତ କଷ୍ଟପ୍ରଦ । ଜନ୍ମଗ୍ରହଣ

କରଥିବା ବ୍ୟକ୍ତି ନିଶ୍ଚିତଭାବରେ ମୃତ୍ୟୁମୁଖରେ ପଡ଼ିବ, ଗୋଟିଏ ଉତ୍ଥାନ ପରେ ପତନ ଅନିବାର୍ଯ୍ୟ ଏବଂ ସଂଯୋଗର ବିଚ୍ଛେଦ ଅବଶ୍ୟମ୍ଭାବୀ ବୋଲି ଏହି ସଂସାରରେ ପରମ୍ପରା ଚାଲି ଆସୁଛି । ଯେପରି ଗୋଟିଏ ଋତୁ ଶେଷ ହୋଇ ଆସିଲେ, ଆଉ ଗୋଟିଏ ଋତୁର ଲକ୍ଷଣ ପରିସ୍ଫୁଟ ହୋଇଉଠେ, ସେହିପରି ଏକ ଆତ୍ମିକ ମିଳନ ପରେ ନିଶ୍ଚୟ ହେଲେ ନା ହେଲେ ବିଚ୍ଛେଦ ଘଟିବ, ଏହା ଜାଣିବାରେ ବିଶେଷ ପ୍ରୟାସ କରିବାକୁ ପଡ଼େନାହିଁ: କିନ୍ତୁ ବିଚ୍ଛେଦଜନିତ ଦୁଃଖପରେ ଏକ ପ୍ରକାର ସୁଖ ମିଳିଥାଏ । ଏହାକୁ ପ୍ରକୃତ ପ୍ରେମିକ ଓ ପ୍ରେମିକା ଅନୁଭବ କରିଥାଆନ୍ତି ।

ସୂତମୁନି କହିଲେ—ହେ ମୁନିଗଣ, ଶ୍ରୀକୃଷ୍ଣ ମନେ ମନେ ଭାବୁଥିଲେ—ମୁଁ ଏହି ବିଚ୍ଛେଦବାର୍ତ୍ତା କିପରି ଶ୍ରୀରାଧାଙ୍କୁ ଜଣାଇବି ? ସେ ଏକଥା ଶୁଣିବାମାତ୍ରେ ନିଶ୍ଚିତଭାବରେ ମୂର୍ଚ୍ଛିତା ହୋଇଯିବେ । ଏହା ବିଚାର କରି ଶ୍ରୀକୃଷ୍ଣ କିଛି ସମୟ ନୀରବରେ ବିତାଇଲେ; କିନ୍ତୁ ସେଥିକରେ ତାଙ୍କ ମନ ମାନିଲା ନାହିଁ । ସେ ଶ୍ରୀରାଧାଙ୍କ ଆଗରେ ଏ' ପ୍ରସଙ୍ଗ ଉଠାଇବେ କି ନାହିଁ କିମ୍ବା ମଥୁରାପୁରକୁ ଯିବେ ନା ନାହିଁ, ଏ' ବିଷୟ ଆଦୌ ସ୍ଥିର କରି ପାରିଲେ ନାହିଁ । ସେ ପୁଣି ଭାବିଲେ—ଆଜି ହେଉଛି ଆମର ଅନ୍ତିମ ମିଳନ । ଆଜି ଯଦି ଶ୍ରୀରାଧାଙ୍କୁ ମୁଁ ସାକ୍ଷାତ୍ ନ କରେ, ତେବେ ସେ ଦୁଃଖରେ ଭାଙ୍ଗି ପଡ଼ିବେ । ଏକଥା ଚିନ୍ତା କରି ଶ୍ରୀକୃଷ୍ଣ ବୃନ୍ଦାବନର ନିଭୃତ କୁଞ୍ଜକୁ ଚାଲିଗଲେ । ସେହି ରାତିରେ ଶ୍ରୀରାଧାଙ୍କ ସହିତ ତାଙ୍କର କାମକେଳୀର ସକଳ ସମ୍ଭାର ବୃନ୍ଦାଦେବୀ ଆୟୋଜନ କରି ରଖିଥିଲେ । ଶ୍ରୀରାଧା ମଧ୍ୟ ସଙ୍କେତ ସ୍ଥାନକୁ ଯିବାପାଇଁ ଅଭିସାର ଉପଯୋଗୀ ବେଶଭୂଷାରେ ସଜ୍ଜିତା ହୋଇ ଆସିଥିଲେ । ଅତ୍ୟନ୍ତ ଉତ୍କଣ୍ଠାର ସହିତ ସେ ପ୍ରତୀକ୍ଷା କରିବାରେ ଲାଗିଲେ । ପ୍ରତୀକ୍ଷାରେ ଦୀର୍ଘସମୟ ଅତିବାହିତ କରିବା ପରେ, ତାଙ୍କ ମନରେ ନାନାପ୍ରକାର ଆଶଙ୍କା ଜାତ ହେଲା ।

ଚନ୍ଦ୍ରର ପ୍ରତୀକ୍ଷାରେ ଚକୋରୀ କାଳଯାପନ କଲା ପରି, ଶ୍ରୀରାଧା ସଖୀମାନଙ୍କ ଗହଣରେ ବ୍ୟାକୁଳତାର ସହିତ ସମୟ ଅତିବାହିତ କରିବାକୁ ଲାଗିଲେ । ସେ ଆଜି ପ୍ରିୟତମଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବା ପାଇଁ ସଖୀମାନଙ୍କୁ ମଧ୍ୟ ନୀଳଭୂଷଣରେ ସଜ୍ଜିତା କରାଇଥିଲେ । ଶ୍ରୀକୃଷ୍ଣ ସେଠାରେ ପହଞ୍ଚି ପ୍ରକୃତରେ ଭ୍ରମରେ ପଡ଼ିଗଲେ । ଏହି ସମୟରେ ସଖୀ ଲଳିତା ହସି ଦେବାରୁ, ଶ୍ରୀକୃଷ୍ଣଙ୍କ ଭ୍ରମ ଦୂର ହେଲା । ସେ ଶ୍ରୀରାଧାଙ୍କ କନ୍ଧରେ ହାତରଖି ପଚାରିଲେ—ପ୍ରିୟେ, ଆଜି ମୋତେ ଭ୍ରମରେ ପକାଇବା ପାଇଁ ତୁମେ ଏପରି ବେଶଭୂଷଣରେ ସଜ୍ଜିତା ହୋଇଛ କାହିଁକି ?

ଶ୍ରୀରାଧା ପ୍ରିୟତମଙ୍କ ପ୍ରଶ୍ନର କୌଣସି ଉତ୍ତର ଦେଲେ ନାହିଁ । ଆଜି କାହିଁକି କେଜାଣି, ତାଙ୍କ ମନରେ ନାନା ପ୍ରକାର ଆଶଙ୍କା ଉଙ୍କି ମାରୁଥିଲା । ସେ ମନରୁ

ସେ ପ୍ରକାର ଆଶଙ୍କା ଦୂର କରିଦେବା ପାଇଁ ଅନେକ ପ୍ରକାର ଉପାୟ ପାଇଥିଲେ ମଧ୍ୟ ତାଙ୍କ ଅନ୍ତରର ବେଦନା ଆଦୌ ପ୍ରଶମିତ ହେଉନ ନାହିଁ ।

ଶ୍ରୀକୃଷ୍ଣ ସଖୀମାନଙ୍କ ସହିତ ଆଳାପ କଲାପରେ, ଶ୍ରୀରାଧାଙ୍କ ସହିତ ନଭୃତ କୁଞ୍ଜରେ ପ୍ରବେଶ କଲେ । ସେ ସେଠାରେ ଶ୍ରୀରାଧାଙ୍କୁ ଅତମାତ୍ରାରେ ସ୍ନେହ କରିବାକୁ ଲାଗିଲେ । ପ୍ରିୟତମଙ୍କ ଆଲିଙ୍ଗନ ପାଶରେ ଜଡ଼ିଯାଇ ଶ୍ରୀରାଧାଙ୍କ ଆଖିରେ ତନ୍ଦ୍ରା ଘୋଟିଗଲା । କିଛି କାଳ ସମୟ ପରେ ସେ ହଠାତ୍ ଚମକ ପଡ଼ି କହିଲେ—ପ୍ରିୟତମ ! ତୁମେ ମୋତେ ଛାଡ଼ି କୁଆଡ଼େ ଚାଲିଯିବ ?

ଶ୍ୟାମସୁନ୍ଦର ନବକିଶୋରୀ ଶ୍ରୀରାଧାଙ୍କୁ ଗାଢ଼ ଆଲିଙ୍ଗନ କରି କହିଲେ—ପ୍ରିୟେ, କଅଣ ହେଲା ତୁମର ? ମୁଁ ତ ତୁମର ପାଖରେ ଅଛି; ତୁମେ ଏପରି ଚମକ ପଡ଼ିଲ କାହିଁକି ?

ଶ୍ରୀମତୀ ପ୍ରକୃତସ୍ଥ ହୋଇ ଉଠି ବସି ପଡ଼ି, ପ୍ରିୟତମଙ୍କ ମୁଖକୁ ଆତଙ୍କିତ ଦୃଷ୍ଟିରେ ଚାହିଁ କହିଲେ—ପ୍ରିୟତମ, ମୋ' ପ୍ରତି ଦୟାକର ! ମୁଁ ଏଇକ୍ଷଣି ଗୋଟିଏ ଭୟଙ୍କର ସ୍ୱପ୍ନ ଦେଖିଲି ।

ଶ୍ରୀକୃଷ୍ଣ ଶ୍ରୀଶ୍ୱରୀଙ୍କୁ କୋଳରେ ବସାଇ ସ୍ୱପ୍ନ ସମ୍ବନ୍ଧରେ ପଚାରନ୍ତେ ଶ୍ରୀମତୀ କହିଲେ—ଶ୍ୟାମସୁନ୍ଦର ! ଆଜି କାହିଁକି ମୋର ମନେ ହେଉଛି—ତୁମେ ମୋତେ ଅତ୍ୟାଧିକ ସ୍ନେହ କରୁଛ । ତୁମ ପ୍ରେମରେ କୃତ୍ରିମତା ଥିବା ମୁଁ ଅନୁଭବ କରୁଛି । ତୁମେ ମୋତେ ଠକୁ ନାହଁ ତ ? ମୁଁ ଏଇଲେ ତୁମ କୋଳରେ ଶୋଇଥିବା ସମୟରେ ଗୋଟିଏ ଭୟଙ୍କର ସ୍ୱପ୍ନ ଦେଖିଲି । ମୁଁ ଗୋଟିଏ ବହୁମୂଲ୍ୟ ରତ୍ନସିଂହାସନରେ ବସିଛି । ମୋ' ଶିର ଉପରେ ଶ୍ୱେତଛତ୍ରଟିଏ ଟଙ୍ଗା ହୋଇଛି । ଏତିକିବେଳେ ମୁଁ ଦେଖିଲି—ଜଣେ ବୃଦ୍ଧ ବ୍ରାହ୍ମଣ ଆସି ମୋ' ଶିର ଉପରେ ଟଙ୍ଗା ହୋଇଥିବା ଛତ୍ରଟିକୁ ଭାଙ୍ଗିଦେଇ ଛଡ଼ାଇ ନେଇଗଲା ! ହେ ଜଳଧର ସୁନ୍ଦର ଶ୍ୟାମ, ତୁମେ ହିଁ ହେଉଛ ମୋର ଛତ୍ର । ସେହି ଛତ୍ରଛାୟାରେ ରହି ମୁଁ ସୌଭାଗିନୀ ହୋଇଛି । ତୁମ ବ୍ୟତିରେକେ ମୁଁ ନିଶ୍ଚୟ ଝାଉଁଳି ପଡ଼ିବି । ତା' ପରେ ମୁଁ ଦେଖିଲି—ମୋ' ଆଗରେ ବିଶାଳ କୃଷ୍ଣସାଗର । ସେହି ବ୍ରାହ୍ମଣ ଜଣକ ଆଗେଇ ଆସି ମୋତେ ସେହି ଅଥଳ ସାଗର ଆଡ଼କୁ ଘୋଷାରି ଘୋଷାରି ନେଇ ଯାଉଛି । ତା'ପରେ ସେ ମୋତେ ସାଗର ଭିତରକୁ ଠେଲିଦେବାମାତ୍ରେ, ମୁଁ କୌଣସି ଅବଲମ୍ବ ନ ପାଇ ବିକଳରେ କ୍ରନ୍ଦନ କରୁଛି । ତା'ପରେ ମୁଁ ଦେଖିଲି—ଆକାଶରୁ ଚନ୍ଦ୍ରମା ତଳେ ପଡ଼ି ଶତ ଖଣ୍ଡ ହୋଇ ଯାଉଛନ୍ତି ।

ଶ୍ରୀରାଧା ମନେ ମନେ ଭାଙ୍ଗିପଡ଼ି ପୁଣି କହିଲେ—ଆକାଶ ମଣ୍ଡଳରେ ଭୁବନ ସୁନ୍ଦର ଉଦିତ ହେବାକ୍ଷଣି, ସେ ମଧ୍ୟ ତଳେ ପଡ଼ି ଚୂରିଖଣ୍ଡ ହୋଇଯାଉଛନ୍ତି । ପୁଣି

କିଛିକ୍ଷଣ ପରେ ଦେଖିଲି—ଆକାଶରେ ସୂର୍ଯ୍ୟ ଓ ଚନ୍ଦ୍ରମା ଏକ ସଙ୍ଗରେ ଉଦିତ ହେଉଛନ୍ତି । ତା'ପରେ ସେ ଦୁହିଁଙ୍କୁ ଏକାବେଳକେ ରାହୁ ଗ୍ରାସ କରି ଦେଉଛି ।

ହେ ପ୍ରିୟତମ ଶ୍ୟାମସୁନ୍ଦର ! ତା'ପରେ ମୁଁ ଦେଖିଲି, ମୋ' କୋଳରେ ଗୋଟିଏ ଅମୃତ କଳସ ରହିଛି । ମୁଁ ତାକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେବାମାତ୍ରେ ପୁଣି ଗୋଟିଏ ବୃଦ୍ଧ ବ୍ରାହ୍ମଣ ଆସି, ସେହି କଳସଟି ମୋ' କୋଳରୁ ଛଡ଼ାଇ ନେଇ ତାହାକୁ ତଳେ ପକାଇ ଖଣ୍ଡ ଖଣ୍ଡ କରି ଦେଉଛି । ଏତିକିବେଳେ ମୋ' ହୃଦୟର ରତ୍ନହାର ଛିଣ୍ଡିଯାଇ ତଳେ ପଡ଼ି ଯାଉଛି ଏବଂ ସେହି ବ୍ରାହ୍ମଣ ଧାଇଁ ଆସି ମୋ' ହସ୍ତରେ କ୍ରୀଡ଼ାକମଳ ଓ ଚକ୍ଷୁର ପୁତୁଳିକାକୁ ଜୋର୍ କରି କାଢ଼ି ନେଇ ତଳେ ପକାଇ ପାଦରେ ଦଳି ଦେଉଛି । ମୁଁ ହାତରେ ଧରିଥିବା ଦର୍ପଣଟି ଧୀରେ ଧୀରେ ମଳିନ ହୋଇ ଯାଉଛି ଏବଂ ତାହା ମଧ୍ୟ ମୋ ହାତରୁ ଖସିପଡ଼ି ଭାଙ୍ଗି ଯାଇଛି ।

ହେ ପ୍ରାଣବଲ୍ଲଭ, ମୁଁ ତା' ପରେ ଦେଖିଲି, ମୋ' ଆଖି ଆଗରେ ପାଷାଣର ମୂର୍ତ୍ତିଗୁଡ଼ିକ ନୃତ୍ୟ କରୁଛନ୍ତି । ସେମାନେ ହସୁଥାନ୍ତି, ଗୀତ ବୋଲୁଛନ୍ତି, ପୁଣି ସଙ୍ଗେ ସଙ୍ଗେ କରୁଣସ୍ୱରରେ ରୋଦନ କରୁଛନ୍ତି । ପୁଣି ମୁଁ ଦେଖିଲି, ଆକାଶରେ ଗୋଟିଏ କୃଷ୍ଣବର୍ଣ୍ଣ ଚକ୍ର ଘୂର୍ଣ୍ଣନ କରୁଛି । ସେତିକିବେଳେ ମୁଁ ଦେଖିଲି—ତୁମେ ମୋତେ ବାରମ୍ବାର ଆଲିଙ୍ଗନ କରି କହୁଛ—ପ୍ରିୟେ, ମୋତେ ହସି ହସି ବିଦାୟ ଦିଅ ।

ହେ ପ୍ରାଣେଶ୍ୱର, ଏପରି ଦୁଃସ୍ୱପ୍ନ ଦେଖିବା ପରେ, ମୋ' ପ୍ରାଣ ବିକଳ ହେଉଛି, ମୋ' ଦକ୍ଷିଣ ଭୁଜରେ ବାରମ୍ବାର ସ୍ପନ୍ଦନ ହେଉଛି । ହେ ଗୋପିକାରମଣ, ତୁମେ ସତ କୁହ, ଏହାର କାରଣ କ'ଣ ?

ସୂତମୁନି କହିଲେ—ହେ ମୁନିଗଣ, ରାଧାରାଣୀ ଏତିକି କହିସାରି, ମୂର୍ଚ୍ଛିତା ହୋଇ ଶ୍ରୀକୃଷ୍ଣଙ୍କ କୋଳରେ ଢଳି ପଡ଼ିଲେ । ତାଙ୍କ ଶରୀରରେ କମ୍ପନ ଜାତ ହେଲା, ଓଷ୍ଠାଧର ଶୁଖି କାଠକାଠ ପଡ଼ିଗଲା । ତହୁଁ ପ୍ରଭୁ ପୀତବାସ ଆପଣା ପିନ୍ଧାକାନରେ ଶ୍ରୀରାଧାଙ୍କୁ ବିଞ୍ଚି ଦେଇ କହିଲେ—ପ୍ରାଣପ୍ରିୟେ, ତୁମେ ଏତେ ବ୍ୟସ୍ତ ହେଉଛ କାହିଁକି ? ତୁମେ ଆଦୌ ଚିନ୍ତା କରନାହିଁ । ମୁଁ ତୁମର ଆଖି ଆଗରେ ବସିଛି, କୁଆଡ଼େ ଯାଇନାହିଁ ।

ପ୍ରିୟତମଙ୍କ ମୁଖରୁ ସୁଧାସମ ବାଣୀ ଶୁଣି ଶ୍ରୀରାଧା ଆଖି ଖୋଲି ଚାହିଁବା ସଙ୍ଗେ ସଙ୍ଗେ ବ୍ୟଗ୍ର ହୋଇ କହିଲେ—ସତ କୁହ ପ୍ରାଣେଶ୍ୱର, ତୁମେ ମୋତେ ଛାଡ଼ି କୁଆଡ଼େ ଚାଲିଯିବ ନାହିଁ ତ ?

ଶ୍ରୀରାଧା ପ୍ରିୟତମ ଶ୍ରୀକୃଷ୍ଣଙ୍କୁ ଏତିକି କହି, ତାଙ୍କ ମୁହଁକୁ ଏକଲୟରେ ଚାହିଁ ରହିଲେ । ତହୁଁ ଶ୍ରୀକୃଷ୍ଣ ହସି ହସି କହିଲେ—ପ୍ରିୟେ ! ମୁଁ ଚାଲିଯିବି କୁଆଡ଼େ ? ମୁଁ

ଅଗ୍ନି, ବାୟୁ, ଆକାଶ ପରି, ସଦା ଓ ସର୍ବତ୍ର ବିଦ୍ୟମାନ । ତୁମ ମୋ' ମଧ୍ୟରେ କୌଣସି ଭେଦ ନାହିଁ । ମୁଁ ତୁମଠାରୁ କିମ୍ବା ତୁମେ ମୋ'ଠାରୁ ପୃଥକ୍ ହୋଇ ପାରିବ ନାହିଁ । ତୁମେ ନିରନ୍ତର ମୋ' ମନ ମଧ୍ୟରେ ନିବାସ କରିଛ ଏବଂ ଅନନ୍ତକାଳ ପର୍ଯ୍ୟନ୍ତ ମୋର 'ହ୍ଲାଦିନୀ ଶକ୍ତି' ରୂପେ ରହିଥିବ । ଆମ ଦୁହିଙ୍କର ସଂଯୋଗ କିମ୍ବା ବିଯୋଗ ନାହିଁ । ଆମେ ଦୁହେଁ ସଦା ଏକ ଓ ଅଭିନ୍ନ ।

ଶ୍ରୀ ମଦନମୋହନଙ୍କ ମୁଖରୁ ଏହା ଶୁଣି ଶ୍ରୀରାଧା କହିଲେ—ହେ ପ୍ରାଣନାଥ, ତୁମେ ଆଜି ଏପରି ମନ ଭୁଲାଣିଆ କଥା କହି, ମୋତେ ଭୁଲାଇବାକୁ ଚେଷ୍ଟା କରୁଛ କାହିଁକି ? ତୁମେ ଭଲଭାବରେ ଜାଣିରଖ, ତୁମ ବିଚ୍ଛେଦରେ ମୁଁ କୌଣସିମତେ ବଞ୍ଚି ପାରିବି ନାହିଁ । ସୁକୋମଳ ଔଷଧିଲତାଗୁଡ଼ିକ ସୂର୍ଯ୍ୟତାପରେ ଝାଉଁଳି ପଡ଼ିଥିଲେହେଁ, ଚନ୍ଦ୍ରକିରଣ ପଡ଼ିବାକ୍ଷଣି ପୁଣି ପ୍ରଫୁଲ୍ଲିତ ହୋଇଉଠନ୍ତି । ସେହିପରି ଯେତେ ନିନ୍ଦା, ଅପବାଦ ଓ କଷ୍ଟରେ ମୁଁ ଝାଉଁଳି ପଡ଼ିଥିଲେହେଁ ତୁମକୁ ଦେଖିବାମାତ୍ରେ ଆନନ୍ଦରେ ଉଲ୍ଲସିତା ହୋଇଉଠେ । ଶୁକ୍ଳପକ୍ଷରେ ଯେପରି ଚନ୍ଦ୍ରକଳା ଦିନକୁ ଦିନ ବୃଦ୍ଧି ହୋଇଥାଏ, ସେହିପରି ତୁମର ମୁଖଦର୍ଶନରେ ମୋର ଉତ୍ସାହ, ଅନୁରାଗ ଓ ମାନସିକ ପରିତୃପ୍ତି ବୃଦ୍ଧି ପାଇଥାଏ । ଚନ୍ଦ୍ରମାର ପ୍ରକାଶରେ ଯେପରି ପୂର୍ଣ୍ଣିମା ରଜନୀ ଝଲସି ଉଠେ, ଠିକ୍ ସେହିପରି ତୁମର ବିଶାଳ ହୃଦୟପଟ୍ଟରେ ଶିର ରଖି କିଛିକ୍ଷଣ ବିଶ୍ରାମ କଲେ, ମୁଁ ଉଲ୍ଲସିତା ହୋଇଉଠେ । ଜଳନ୍ତା ଅଗ୍ନିରେ ଘୃତ ପଡ଼ିଲେ, ଯେପରି ହୁହୁ ହୋଇ ଜଳିଉଠେ, ଠିକ୍ ସେହିପରି ତୁମକୁ ପାଇ, ମୋର ଓଜ, ତେଜ ଓ କାନ୍ତି ବିକଶିତ ହେଉଛି ।

ହେ ଶ୍ୟାମ ସୁନ୍ଦର ! ତୁମ ଛଡ଼ା ସଂସାରରେ ଜୀବନଧାରଣ କରି ରହିବା ମୋ' ପକ୍ଷରେ କୌଣସି ମତେ ସମ୍ଭବ ହେବ ନାହିଁ । ତୁମେ ହେଉଛ—ଏହି ବ୍ରଜଭୂମିର ଚନ୍ଦ୍ର । ତୁମକୁ ପାଇ ଏ ସମଗ୍ର ବ୍ରଜଭୂମି ଧନ୍ୟ ହୋଇଛି । ନନ୍ଦ ଓ ଯଶୋଦାଙ୍କ ନୟନର ତାରା ହେ ଶ୍ୟାମସୁନ୍ଦର ! ତୁମେ ଗୋପପୁର ତ୍ୟାଗ କରି ଅନ୍ୟ କୌଣସି ସ୍ଥାନକୁ ଯିବା ପାଇଁ କେବେହେଲେ ମନ ବଳାଇବ ନାହିଁ । ତୁମେ ବୃନ୍ଦାବନର ସୁଷମା, ତୁମ ବିନୁ ଏ ବନଶ୍ରୀ ହତଶ୍ରୀରେ ପରିଣତ ହୋଇଯିବ !

ଶ୍ରୀରାଧାଙ୍କ ମନକଥା ଶୁଣି ବ୍ରଜରାଜ କୃଷ୍ଣଚନ୍ଦ୍ର କହିଲେ—ପ୍ରିୟେ, ତୁମେ ଏତେ ଦୁଃଖିତ କାହିଁକି ହେଉଛ ? ତୁମେ ହେଉଛ ମୋର ପରାଣ ସଙ୍ଗିନୀ ଓ ହୃଦୟର ମଣି । ତୁମଠାରୁ ଦଣ୍ଡେ ହେଲେ ମୁଁ ପୃଥକ୍ ହୋଇ ପାରିବି ନାହିଁ ।

ଏହାଶୁଣି ଶ୍ରୀମତୀ କହିଲେ—ତୁମେ କ'ଣ ସତ୍ୟ କହୁଛ ଯେ, ମୋତେ ଛାଡ଼ି କେବେହେଲେ କୁଆଡ଼େ ଯିବ ନାହିଁ ? ମୋ'ରାଣ ପକାଇ କହିଲ ?

ସୂତମୁନି କହିଲେ—ହେ ମୁନିଗଣ ! ଏଥର ଶ୍ରୀକୃଷ୍ଣ ଧର୍ମ ସଙ୍କଟରେ ପଡ଼ିଗଲେ । ସେ ତୁଣ୍ଡ ଖୋଲି 'ହଁ' କିମ୍ବା 'ନା' କହିଦେଲେ କହିପାରିଲେ ନାହିଁ । ଏହା ଲକ୍ଷ୍ୟ କରି ଶ୍ରୀମତୀଙ୍କ ମନରେ ସନ୍ଦେହ ଘନୀଭୂତ ହୋଇଗଲା । ସେ ଶ୍ରୀକୃଷ୍ଣଙ୍କ ବିଷାଦ ଭୋଳା ମୁଖମଣ୍ଡଳକୁ ଚାହିଁ କହିଲେ—ପ୍ରିୟ କିଛି ଉତ୍ତର ଦେଉ ନାହଁ କାହିଁକି ? ସତକୁହ, ତୁମେ ଗୋପପୁର ଛାଡ଼ି ଅନ୍ୟ କୁଆଡ଼େ ଯିବାକୁ ମନ ବଳାଇ ନାହଁ ତ ?

ଶ୍ରୀକୃଷ୍ଣ ମୁଖମଣ୍ଡଳରେ କୃତ୍ରିମ ହାସ୍ୟ ରେଖାଟିଏ ଖେଳାଇ ଦେଇ କହିଲେ—ପ୍ରିୟେ ! ମୁଁ ଆଦୌ ବ୍ରଜପୁରଠାରୁ ଦୂରକୁ ଯିବାଲାଗି ଇଚ୍ଛା କରି ନାହିଁ । ମାତ୍ର ଅଳ୍ପଦିନ ପାଇଁ ମଥୁରାକୁ ଯିବାଲାଗି ବାଧ୍ୟହେଉଛି । ଏଇ ମାତ୍ର କେଇଟି ଦିନ ତୁମେ ଏକାକିନୀ ହୋଇ ରହିବ । ତା'ପରେ ମୁଁ ଫେରି ଆସିବାମାତ୍ରେ ପୁଣି ଆମର ମିଳନ ଏହି ନିଭୃତ କୁଞ୍ଜରେ ହେବ ।

ଏହା ଶୁଣିବାମାତ୍ରେ ଶ୍ରୀମତୀ ରାଧିକା ଚମକିପଡ଼ି କହିଲେ—ଅଚ୍ଛା ! ତା' ହେଲେ ତୁମେ ମଥୁରା ଯିବାଲାଗି ଆଗରୁ ମନେ ମନେ ସ୍ଥିର କରି ସାରିଛ ! କାହିଁ, ମୋତେ ତ ଦିନେ ହେଲେ ଏହାର ସୂଚନା ଦେଇ ନାହିଁ ? ତୁମେ ଯିବାକୁ ଚାହିଁଲେ, ତୁମକୁ ଅଟକାଇ ପାରିବ କିଏ ? କିନ୍ତୁ ହେ ବ୍ରଜବଲ୍ଲଭ, ହେ ପ୍ରାଣଧନ ! ମନେରଖ, ତୁମେ ବ୍ରଜପୁରରୁ ଚାଲିଗଲେ, ମୋ' ସୌଭାଗ୍ୟର ସବିତା ଚିରଦିନ ଲାଗି ଅସ୍ତାଚଳରେ ଶରଣ ପଶିବେ । ମୋତେ ତୁମେ ଘୋର ବିପଦ ସାଗରକୁ ଠେଲି ଦେଇ ମଥୁରା ଯାଅ ନାହିଁ ପ୍ରାଣପ୍ରିୟ ! ତୁମେ ଚାଲିଗଲେ, ମୁଁ କେବଳ ଦିବାରାତ୍ରି ତୁମରି ନାମ ଝୁରିଝୁରି ମରିବି ।

ହାୟ, ତୁମକୁ ପାଇ ମୁଁ କେଡ଼େ ସୌଭାଗ୍ୟଶାଳିନୀ ହୋଇ ଉଠିଥିଲି ! ସଂସାର ମଧ୍ୟରେ ମୁଁ ସର୍ବଶ୍ରେଷ୍ଠନାରୀ ବୋଲି ମୋର ଗର୍ବଥିଲା । ତୁମେ ଏଠାରୁ ଚାଲିଗଲେ, ମୋର ସେ ଗର୍ବ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ । ତୁମେ ମଧ୍ୟ ମୋତେ ଛାଡ଼ି କେବେହେଲେ ସୁଖ ପାଇବ ନାହିଁ । ତୁମକୁ ହରାଇ ମୁଁ ଭଗ୍ନଶାଖା ପରି ଶୁଖି ଝଡ଼ି ପଡ଼ିବି । ମୋତେ ତ୍ୟାଗ କରି ମଥୁରା ଯାଅ ନାହିଁ ବ୍ରଜନାଥ !

ଶ୍ରୀମତୀଙ୍କ କାକୁତି ମିନତିରେ ଶ୍ରୀକୃଷ୍ଣ ବିଚଳିତ ହୋଇ ଉଠିଲେ । ତାଙ୍କ ନୟନ-ଯୁଗଳ ଛଳଛଳ ହୋଇଗଲା । ସେ ଗଦ୍‌ଗଦ୍ କଣ୍ଠରେ କହିଲେ—ପ୍ରିୟେ, ମୁଁ କ'ଣ ତୁମକୁ ଛାଡ଼ି ଚାଲିଯିବା ପାଇଁ କେବେହେଲେ ଚାହୁଁଛି ? କିନ୍ତୁ ଉପାୟ କ'ଣ ? କର୍ତ୍ତବ୍ୟର ତାଡ଼ନାରେ ମୋତେ ମଥୁରା ଯିବାକୁ ପଡୁଛି । କାଲି ସନ୍ଧ୍ୟାବେଳୁ ଅକ୍ରୂର ଆସି ପହଞ୍ଚିଲେଣି । ମୋତେ ମଥୁରା ନେଇଯିବା ଲାଗି ସେ କଂସରେ ରଥ ଘେନି ଆସି ଉପସ୍ଥିତ ହୋଇଛନ୍ତି । ତୁମେ ଗୋଟିଏ ସୁକଥା ଶୁଣ କର । ସୁଦାମା ଗୋପ ଆମର ଛାଡ଼ବାଡ଼ ପାଇଁ

ସେହିନ ଅଭିଶାପ ଦେଇଥିଲ । ତୁମେ ଆଦୌ ଚିନ୍ତା କରନାହିଁ । ପୁଣି ସମୟ ଆସିଲେ, ଆମର ମିଳନ ହେବ । ଆମେ ପୁଣି ନିତ୍ୟ ନୂତନ ଲୀଳାରେ ମାତି ଉଠିବା ।

ହେ ମୁନିଗଣ, ଏହା କହି ଶ୍ରୀକୃଷ୍ଣ ରାଧିକାଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ବନ୍ଦୀ କରିବା ପରେ ସେଠାରୁ ଚାଲି ଯିବାକୁ ଉଦ୍ୟତ ହେଲେ । ପ୍ରଭୁଙ୍କ ବିରହରେ କାତର ହୋଇ, ଶ୍ରୀମତୀ ସେହି ନିଭୃତ କୁଞ୍ଜ ସଦନରେ ଚେତନା ହରାଇ ପଡ଼ି ରହିଲେ ।

ଏତିକିବେଳେ ଦୂରରୁ ଗୋପାଳମାନଙ୍କ କୋଳାହଳ ଶୁଭାଗଲା । ସେମାନେ ଡିଣ୍ଡିମ ବଜାଇ ଗୋପପୁର ବାସୀଙ୍କୁ ନନ୍ଦରାଜାଙ୍କ ଆଦେଶ ଶୁଣାଉଥିଲେ—ଆଜି କେହି କ୍ଷୀର ଆଉଟିବ ନାହିଁ କିମ୍ବା ଦଧି ମନ୍ଥନ କରିବ ନାହିଁ । କ୍ଷୀର, ଦଧି, ଲହୁଣୀ, ଗୋଟିକା, ଅଧାମ, ଆଦି ଏକତ୍ରିତ କରି ବ୍ରଜରାଜନନ୍ଦଙ୍କ ଦୁଆରେ ଦେଇ ଆସ । ନନ୍ଦରାଜା ସ୍ୱର ସଜ କରି ଆଜି ପୂର୍ବାହ୍ଣରେ ମଥୁରାକୁ ଯାଇ କଂସରାଜାଙ୍କ ଧନୁଯାତ୍ରାରେ ଯୋଗ ଦେଇ, ଦୁଗ୍ଧ ଦଧି ଆଦି ଭେଟି ସ୍ୱରୂପ ଅର୍ପଣ କରିବେ ।

ଏହି ମୁଖଶୋଳ ଶୁଣିବାମାତ୍ରେ ଶ୍ରୀକୃଷ୍ଣ ଶ୍ରୀରାଧିକାଙ୍କ ସଖୀମାନଙ୍କୁ ମୂର୍ଚ୍ଛିତା ପ୍ରିୟାର ଯତ୍ନ ନେବାଲାଗି ଆଦେଶ ଦେଇ କୁଞ୍ଜ ସଦନରୁ ଚାଲି ଆସିଲେ ।

ପୌରାଣିକ ସୂତମୁନି କହିଲେ—ହେ ମୁନିଗଣ, ପ୍ରେମର ଲୀଳା ଅତି ବିଚିତ୍ର ! ଏହି ଅବସ୍ଥାର ଉପହାର ହେଉଛି—ନୟନର ଅଶ୍ରୁଧାର । ଶ୍ୟାମସୁନ୍ଦରଙ୍କ ବିଚ୍ଛେଦ ଦୁଃଖରେ କେବଳ ଶ୍ରୀମତୀ ନୁହଁନ୍ତି, ଗୋପପୁରର ସମସ୍ତ ଲଲନା ବିଳାପ କରିବାକୁ ଲାଗିଲେ । ମୁଁ ପରେ ବିରହିଣୀ ଗୋପିମାନଙ୍କ କରୁଣ ଅବସ୍ଥା ବର୍ଣ୍ଣନା କରିବି ।

## ଛପ୍‌ପୟ

ବିଲଖତି ରାଧା କହତି- ପ୍ରାଣପତି ! ଯଦି ତୁମ ଜାଓ ।
ତୋ ନହିଁ ଜୀବିତ ମୋହି ଫେରି ବରସାନେ ପାଓ ॥
ନିଶା ଚନ୍ଦ୍ର ବିନୁ ନଦୀ ନୀର ବିନୁ ସୋହ ନ ଜୈସେ ।
ଦେହ ପ୍ରାଣ ବିନୁ ମୃତକ ବନେ ତୁମ ବିନୁ ହୌଁ ତୈସେ ॥
ମଛଲୀ ଜଲ ବିନୁ ନହିଁ ଜୀୟେ, ପୟେ ଚାତକୀ ସ୍ୱାତି ଜଲ ।
ତୈଁସା ତୁମରେ ବିନୁ ପ୍ରାନପତି, ହୋହୁଁ ହୃଦୟ ଅତିହି ବିକଲ ॥

# ଗୋପୀମାନଙ୍କ ବିରହ

ଗତିଂ ସୁଲଳିତାଂ ଚେଷ୍ଟାଂ ସ୍ନିଗ୍ଧହାସାବଲୋକନମ୍ ।
ଶୋକାପହାନି ନର୍ମାଣି ପ୍ରୋଦ୍ଦାମ ଚରିତାନି ଚ ॥
ଚିନ୍ତୟନ୍ତ୍ୟୋ ମୁକୁନ୍ଦସ୍ୟ ଭୀତା ବିରହକାତରାଃ ।
ସମେତାଃ ସଙ୍ଘଶଃ ପ୍ରୋଚୁରଶ୍ରୁମୁଖ୍ୟୋଽଚ୍ୟୁତାଶୟାଃ ॥

(ଭା ୧୦ସ୍କ । ୩୯ଅ । ୧୭, ୧୮ଶ୍ଳୋ)

## ଛପ୍ପୟ

ହରି ସମୁଝାଇ ପ୍ରିୟା କୃଷ୍ଣତେଁ ଆୟେ ଘରମହଁ ।
ଜାତେଓ୍ୱ ମଥୁରା ଶ୍ୟାମ ବାତ ଫୈଲୀ ସବ ବ୍ରଜମହଁ ॥
ଗୋପୀ ସୁନି ସବ ଦୁଃଖିତ ଭଈ ହୃୟ ଅତି ଅକୁଲାୟେ ।
କରି କରି ହରି କୀ ୟାଦ ସବନ କୋ ସୁଖ ମୁରଝାୟୋ ॥
ବଧିକୁଁ କୋସେଁ କୁପିତ ହ୍ୱୈ ନନ୍ଦଭବନ ଢିଗ ଆଇକେ ।
ମିଲି ବିଲପ ସବଈ କରେ, ନୟନନ ନୀର ବହାଇକେ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ଶ୍ରୀ କୃଷ୍ଣଙ୍କ ବିଚ୍ଛେଦର ସମ୍ଭାବନାରେ ବ୍ୟାକୁଳ ହୋଇ ଗୋପିମାନେ ଶ୍ୟାମସୁନ୍ଦରଙ୍କ ଲୀଳା, ବିଳାସ ହାବ, ଭାବ, ବିଚିତ୍ର କ୍ରୀଡ଼ା, ଚିନ୍ତାଦୂର କରିବାଭଳି ପରିହାସପୂର୍ଣ୍ଣ କଥାବାର୍ତ୍ତା ହାସ୍ୟଛଟାରେ ଉଦ୍ଭାସିତ ମୁଖମଣ୍ଡଳର ସ୍ମରଣ କରିବାକୁ ଲାଗିଲେ । ସେମାନେ ଶ୍ରୀକୃଷ୍ଣ ପ୍ରେମରେ ବିଭୋର ହୋଇ, ଗୋଟିଏ ଗୋଟିଏ ସ୍ଥାନରେ ଦଳ ଦଳ ହୋଇ ଅଶ୍ରୁବିମୋଚନ କରିବାକୁ ଲାଗିଲେ । ସେମାନେ ସ୍ୱାମୀ ବିରହ ସ୍ମରଣ କରି ନାନାପ୍ରକାର କରୁଣ ବାଣୀରେ ବିଳାପ କଲେ ।

ପରମପ୍ରିୟ ତଥା ଅଙ୍ଗସଙ୍ଗୀଙ୍କ ବିଚ୍ଛେଦରେ ମନ ମଧ୍ୟରେ କି ପ୍ରକାର ପ୍ରତିକାର ହୁଏ, ତାହା ଅନୁଭବୀ ଭିନ୍ନ ଆଉ କେହି ଅନୁଭବ କରି ପାରିବେ ନାହିଁ । ବୃଦ୍ଧ ପିତାମହ ବ୍ରହ୍ମାଙ୍କ ରଚନାରେ ଏ ପ୍ରକାର ଅସାମଞ୍ଜସ୍ୟର କାରଣ କ'ଣ ? ହୁଏତ ସେ ଆଦୌ ମିଳନର ସ୍ୱାଦ ବୁଝି ନାହାନ୍ତି କିମ୍ବା ବିଚ୍ଛେଦର ବେଦନା ଅନୁଭବ କରି ନାହାନ୍ତି ।

ତା ହୋଇ ନଥିଲେ, ଏପରି ବିଚ୍ଛେଦଜନିତ କଷ୍ଟ ନଥାନ୍ତା । ପ୍ରିୟତମଙ୍କ ସହିତ ମିଳିତ ହେବାପରେ ବିରହ ଯେ କେଡ଼େ କଷ୍ଟଦାୟକ ତାହାର କଳ୍ପନାମାତ୍ରେ ଶରୀର ରୋମାଞ୍ଚିତ ହୋଇଯାଏ ।

ସୂତମୁନି କହିଲେ—ହେ ଶୌନକାଦି ମୁନିଗଣ ! ଶ୍ରୀକୃଷ୍ଣ ମୂର୍ଚ୍ଛିତ ଅବସ୍ଥାରେ ଶ୍ରୀରାଧାଙ୍କୁ କୁଞ୍ଜକୁଟୀରରେ ଛାଡ଼ି ଦେଇ ସେଠାରୁ ଚାଲିଗଲେ । କିଛିକ୍ଷଣ ପରେ ଶ୍ରୀରାଧାଙ୍କର ଚେତା ଫେରିବାରୁ, ସେ ହତପ୍ରଭ ହୋଇ ଏଣେତେଣେ ଚାହିଁ କରୁଣ-ସ୍ୱରରେ ବିଳାପ କରିବାକୁ ଲାଗିଲେ । ଶ୍ରୀରାଧାଙ୍କ କରୁଣ ବିଳାପଶୁଣି ଗୋପୀମାନେ ଧାଇଁ ଆସିଲେ । ତାଙ୍କଠାରୁ ସମସ୍ତ ବିଷୟ ଶୁଣି ସମସ୍ତେ କିଛି ସମୟ ସ୍ତମ୍ଭୀଭୂତ ହୋଇ ରହିଲେ । ସମସ୍ତେ ଜାଣିଗଲେ—କାଲି ସନ୍ଧ୍ୟାବେଳେ ଅକ୍ରୂର ଆସିଛନ୍ତି ଶ୍ରୀକୃଷ୍ଣ ବଳରାମଙ୍କୁ ମଥୁରା ନେଇ ଯିବାଲାଗି । କଂସ ରାଜାର ଆଦେଶରେ ରଥ ଘେନି ଅକ୍ରୂର କାଲିଠାରୁ ଆସି ଧାରଣା ଦେଇଛନ୍ତି । ଏ ସମ୍ବାଦ ବ୍ରଜପୁରରେ କ୍ଷଣକ ମଧ୍ୟରେ ପ୍ରଚାରିତ ହୋଇଗଲା । ଏହା ଶୁଣିବାମାତ୍ରେ ସମସ୍ତଙ୍କ ମନରେ ଚମକ ସୃଷ୍ଟି ହୋଇଗଲା । ଏହା ପ୍ରଚାରିତ ହୋଇଯିବାମାତ୍ରେ କେତେକ ଗୋପିକା ଭାବୀ ବିଚ୍ଛେଦର ସମ୍ଭାବନାରେ ଚେତା ହରାଇ ତଳେ ପଡ଼ିଗଲେ । ଅନ୍ୟମାନେ ଶିରରେ କରମାରି ଦୀର୍ଘଶ୍ୱାସ ତ୍ୟାଗ କଲେ । କାହାରି କାହାରି ମୁଖ ବିବର୍ଣ୍ଣ ହୋଇଗଲା । ଆଉ କାହାରି କାହାରି କରରୁ ସୁବର୍ଣ୍ଣ କଙ୍କଣ ଖସି ପଡ଼ିଲା । କେଶବାସ ଶିଥିଳ ହୋଇଗଲା ଏବଂ ଅଙ୍ଗୁଳିରୁ ମୁଦ୍ରିକା ଖସି ତଳେ ପଡ଼ିଗଲା । ଗୋପୀମାନେ ଏତେ ବିଷର୍ଣ୍ଣ ହୋଇଗଲେ ଯେ, ସେମାନଙ୍କର ବାହ୍ୟଜ୍ଞାନ ରହିଲା ନାହିଁ । ତାଙ୍କ ଆଖିଆଗରେ ମଦନ ସୁନ୍ଦର ଶ୍ରୀକୃଷ୍ଣଙ୍କ କାମଜିଣା କାନ୍ତି ଝଲସି ଉଠିଲା । ସେମାନେ ସମାଧିସ୍ଥ ଯୋଗିମାନଙ୍କ ପରି ତଦ୍‌ଗତ ଭାବନାରେ ନିମଗ୍ନ ହୋଇଗଲେ । ସେମାନେ ଶ୍ରୀକୃଷ୍ଣଙ୍କ ମଧୁର ଲୀଳାକୁ ବାରମ୍ବାର ସ୍ମରଣ କରି, ଅନ୍ତରରେ ଅଶେଷ ଦୁଃଖ ଅନୁଭବ କଲେ, ସେମାନେ ଶ୍ରୀକୃଷ୍ଣଙ୍କର ଲଳିତ ତଥା ମଧୁମୟ ବଚନକୁ ମନେ ପକାଇ ତନ୍ମୟପ୍ରତିମା ପ୍ରାପ୍ତ ହୋଇଗଲେ । ମଦନମୋହନଙ୍କର ପ୍ରତ୍ୟେକ ହାବଭାବ ସେମାନଙ୍କ ଆଖିଆଗରେ ନାଚି ଉଠିଲା । ସେମାନେ ବାହ୍ୟଜ୍ଞାନ ହରାଇ ଶ୍ରୀକୃଷ୍ଣଙ୍କ ଲୀଳା ବିଳାସର ଅନୁକରଣ କରିବାକୁ ଲାଗିଲେ । ଶେଷରେ ସେମାନେ ଦଳଦଳ ହୋଇ କାନ୍ଦି କାନ୍ଦି, ଅକ୍ରୂରକୁ ଗାଳି ଦେଇ ଦେଇ, ନନ୍ଦରାଜାଙ୍କ ଦ୍ୱାର ଆଡ଼କୁ ଅଗ୍ରସର ହେଲେ ।

ହେ ମୁନିଗଣ, ଗୋପୀମାନଙ୍କ ମଧ୍ୟରୁ ଅନେକ ବିଳାପ କରି କହିଲେ—ହାୟ, ଆଜି ଶ୍ୟାମସୁନ୍ଦର ଗୋପପୁର ତ୍ୟାଗ କରି ମଥୁରାକୁ ଚାଲି ଯିବେ ! ତାଙ୍କ ବିଚ୍ଛେଦରେ ଆମେମାନେ ଏ ଗୋପପୁରରେ ରହିବୁ କିପରି ? କଂସ ରାଜାର ଏ ଅନ୍ୟାୟ ସମସ୍ତ ପ୍ରକାର ପୂର୍ବ ଅତ୍ୟାଚାରଠାରୁ ବଳି ପଡ଼ିଲା ।

ଆଉଜଣେ ଗୋପବାଳୀ ଅନ୍ୟମାନଙ୍କୁ ବୁଝାଇ କହିଲା—ଭଉଣୀମାନେ, ଏଥିରେ ତାହାର ଦୋଷ ନାହିଁ । ଜନ୍ମ ସମୟରେ ବିଧିବିଧାତା ଯାହା କପାଳରେ ଲେଖିଛି, ତାକୁ ଅନ୍ୟଥା କରିବ କିଏ ?

ଆଉ ଜଣେ ଗୋପିକା ତାଙ୍କୁ କଟମଟ କରି କହିଲା—ଛି, ଛି, ! ସେ ବୁଢ଼ା ବିଧି ବିଧାତାକୁ ଟିକିଏ ହେଲେ ଲାଜଶରମ ନାହିଁ । ମୋର ମନେ ହେଉଛି—ବିଧିବିଧାତାର ଭଲେ ହେଲେ ଜାଣ୍ଣଜ୍ଞାନ ନାହିଁ । ସେ ସୃଷ୍ଟି ବିଧାନ ସମୟରେ ଭଲେ ହେଲେ ବିସ୍ତର ଆଲୋଚନା କରି, କିଛି ହେଲେ କରି ନାହାନ୍ତି । ତେଣୁ ସଂଯୋଗ ଓ ବିଚ୍ଛେଦ ଏକା ସଙ୍ଗରେ ଗୁନ୍ଥି ପ୍ରାଣୀମାନଙ୍କୁ ହନ୍ତସନ୍ତ କରୁଛନ୍ତି । ଯଦି ବିଧାତା ପ୍ରାଣିମାନଙ୍କଠାରେ ହୃଦୟ ସୃଷ୍ଟି କଲେ, ସେଠାରେ ସ୍ଥାୟୀ ପ୍ରେମ ଉତ୍ପନ୍ନ କଲେ ନାହିଁ କାହିଁକି ? ଅତୃପ୍ତ ପ୍ରେମବାସନାର ମହତ୍ତ୍ୱ କେଉଁଠି ? ଅତୃପ୍ତପ୍ରେମ ଫଳରେ ହୃଦୟରେ ଯେଉଁ ଦୁଃଖ ଜାତ ହୁଏ ବିଧାତା ପୁରୁଷ ତାହାକୁ ଆଦୌ ହୃଦୟଙ୍ଗମ କରି ନାହାନ୍ତି । ବ୍ରହ୍ମା ନିତାନ୍ତ ଅବୋଧ ଶିଶୁପରି କାର୍ଯ୍ୟ କରୁଛନ୍ତି । ତାଙ୍କର ମୂର୍ଖତାପୂର୍ଣ୍ଣ ବ୍ୟବହାର ଫଳରେ ଆମର ସର୍ବନାଶ ହେବାକୁ ଯାଉଛି ।

ଶ୍ରୀକୃଷ୍ଣଙ୍କ ନୀଳମେଘମାଳା ସଦୃଶ କାନ୍ତି ଆମ ଆଖି ଆଗରେ ନାଚଯାଉଛି । ତାଙ୍କର ଘନକୃଷ୍ଣ କୁଞ୍ଚିତ ଅଳକାବଳୀରେ ଆବୃତ ଚନ୍ଦ୍ରମୁଖ, ଦର୍ପଣ ସଦୃଶ ସ୍ୱଚ୍ଛ ଗଣ୍ଡମଣ୍ଡଳ, ବିମ୍ବ ବିନିନ୍ଦିତ ଅଧର ଓଷ୍ଠ, ସୁନ୍ଦର ନାସିକା ତଥା ମଧୁର ହାସ୍ୟଛଟା ପରିପୂର୍ଣ୍ଣ ଆନନ ଆଖି ଆଗରୁ ଦୂରେଇ ନେଇ ବିଧାତାଙ୍କର କେଉଁ ଉଦ୍ଦେଶ୍ୟ ସାଧିତ ହେବ ? ଏହା ତାଙ୍କର ନିତାନ୍ତ ଅନ୍ୟାୟପୂର୍ଣ୍ଣ ବ୍ୟବହାର ! ଏପରି ଜଘନ୍ୟ ବ୍ୟବହାର ନିତାନ୍ତ କ୍ରୂର ମନୁଷ୍ୟ ମଧ କରି ପାରିବ ନାହିଁ । ଏଇଲାଗେ ଯଦି ଆମ ଚକ୍ଷୁ ସମକ୍ଷରେ ସେ କ୍ରୂର ବିଧାତା ପଡ଼ନ୍ତେ, ଆମେ ତାଙ୍କୁ ଖଣ୍ଡ ଖଣ୍ଡ କରି ଦିଅନ୍ତେ ।

ଏହାଶୁଣି ଆଉ ଜଣେ ଗୋପିକା କହିଲା—ସଖି, ଶୁଣିଛି, ସେ ବିଧାତା ବହୁରୂପ ଧାରଣ କରିପାରେ । ସେ ଯେତେବେଳେ ଯାହା ଚାହେଁ, ସେପ୍ରକାର ରୂପଧାରଣ କରିବାରେ ବେଶ୍ ଧୁରନ୍ଧର ! ବୋଧହୁଏ ସେ ଏଇଥର ଅକ୍ରୂର ବେଶରେ ଗୋପପୁରରେ ଉପସ୍ଥିତ ହୋଇଛି । ସେ ତା'ର ଆଉ ତିନିଗୋଟି ମୁହଁ ଗୋପନ କରି, ମାତ୍ର ଗୋଟିଏ ମୁଖ ଧାରଣ କରି ଅକ୍ରୂର ବେଶରେ ବ୍ରଜପୁରରେ ଉପସ୍ଥିତ ହୋଇଛି । ସେ ତା'ର ହଂସ ବାହନକୁ ନିଜର ବ୍ରହ୍ମଲୋକରେ ଲୁଚାଇ ଦେଇ, ଏଠାକୁ ରଥରେ ଆରୋହଣ କରି ଆସିଛି । ସେ ସଦାସର୍ବଦା ଗୋଟିଏ କମଣ୍ଡଳୁ ହସ୍ତରେ ଧାରଣ କରିଥାଏ । କାଳେ ଆମେ ତାକୁ ଚିହ୍ନି ପାରିବା, ସେ ସେଇଥିଲାଗି କମଣ୍ଡଳୁଟିକୁ କେଉଁଠି ଲୁଚାଇ ଦେଇ ହାତରେ ଧନୁକ ଧାରଣ କରି ଏଠାରେ ଉପସ୍ଥିତ ହୋଇଛି । ସେ ନିଜର କ୍ରୂର ଆଚରଣ ଫଳରେ ଅକ୍ରୂର ନାମ ଧାରଣ କରିଛି ।

ଅମ୍ଭେମାନେ ବ୍ରଜପୁରର ଗୁର ଗୋପାଳଣୀ । କିନ୍ତୁ ଆମ ପୂର୍ବ ଜନ୍ମର ତପସ୍ୟାର ଫଳ ସ୍ୱରୂପ ମାଧବ ଆମ ଆଖି ଆଗରେ ଲୀଳାଖେଳା କରିଛନ୍ତି । ଆମର ଅହୋଭାଗ୍ୟ ଫଳରେ ମାଧବ ଆମ ନୟନର ପୁତ୍ତଳିକା ହୋଇଛନ୍ତି । ଯେଉଁ ନନ୍ଦନନ୍ଦନଙ୍କର ସୌନ୍ଦର୍ଯ୍ୟ ଆଗରେ କୋଟିବିଶ୍ୱର ଅନୁପମ ସୌନ୍ଦର୍ଯ୍ୟ ତୁଚ୍ଛ ବୋଲି ମନେହୁଏ, ସେହି ମଦନ-ମୋହନଙ୍କୁ ଆମ ନୟନର ପୁତ୍ତଳିକା କରି ବ୍ରଜଧାମରେ କିଛିଦିନ ମାତ୍ର ରଖାଇବା ପରେ, ସେହି କ୍ରୂର ବିଧାତା ତାଙ୍କୁ ଦୂର କରିନେବା ପାଇଁ ଅକ୍ରୂର ରୂପରେ ଏଠାରେ ଉପସ୍ଥିତ ହୋଇଛି । ଚାଲ, ଆମେ ସମସ୍ତେ ଏକଜୁଟ ହୋଇ ସେହି ଦୁଷ୍ଟଟାକୁ ନନ୍ଦରାଜାଙ୍କ ଘରୁ ଦୂରେଇ ନେଇ ଆଉ କେଉଁଠି ଲୁଚାଇ ଦେବା । ତାକୁ ଗୋପନରେ ଅପହରଣ କରିନେଇ କେଉଁ ଘର ଭିତରେ ରଖାଇ ବାହାରୁ ତାଲା ପକାଇ ଦେବା । ଆଉ ବାଉଁଶ ଥିବ ଯେ, ବଂଶୀ ବାଜିବ ! ଅକ୍ରୂରଙ୍କୁ ଲୁଚାଇ ଦେଲେ, ଆଉ ଶ୍ୟାମସୁନ୍ଦରଙ୍କୁ ଏଠାରୁ ନେଇଯିବ କିଏ ?

ଏହା ଶୁଣି ଆଉ ଜଣେ ଗୋପବାଳୀ କହିଲା—ସଖି, ଅନ୍ୟକୁ ଦୋଷ ଦେଇ ଲାଭ କ'ଣ ? ନିଜ ସୁନାତ ବେଙ୍ଗିପିତଳ; ଆଉ ବଣିଆକୁ ଦୋଷ ଦେଇକ'ଣ ମିଳିବ ? ଶ୍ୟାମସୁନ୍ଦର ଯଦି ମଥୁରା ଯିବା ଲାଗି ନିଜେ ଇଚ୍ଛା ନ କରିବେ, ତେବେ ତାଙ୍କୁ କ'ଣ ବଳପୂର୍ବକ ଅକ୍ରୂର ନେଇ ଯାଇ ପାରିବ ? ଶୁଣାଯାଏ—ନିଜେ ଶ୍ରୀକୃଷ୍ଣ ଗୋପପୁର ତ୍ୟାଗ କରି, ମଥୁରାକୁ ଯିବା ଲାଗି ଗୋଡ଼ ଟେକି ବସିଛନ୍ତି । ସେ ତ ମଥୁରା ଯିବା କଥା ଶୁଣିବା ମାତ୍ରେ ହସ ଖୁସିରେ ଉଛୁଳି ଉଠିଛନ୍ତି । ଏଥିରେ ବିଚରା କଂସର ଦୂତ ଅକ୍ରୂରକୁ ଦୋଷ ଦେଇ ଲାଭ କ'ଣ ? ସଖି, ଶ୍ରୀକୃଷ୍ଣ ଆଜି ପର୍ଯ୍ୟନ୍ତ ଆମକୁ ମିଥ୍ୟା ପ୍ରେମରେ ଭୁଲାଇ ରଖିଥିଲେ । ସେ କେବଳ ସ୍ନେହ ଓ ପ୍ରେମ କରି ଜାଣନ୍ତି; କିନ୍ତୁ ସେହି ପ୍ରେମ କପରି ଚିରସ୍ଥାୟୀ ହେବ, ତାହା ଶିଖି ନାହାଁନ୍ତି । ଏଭଳି ଗୋଟିଏ ନିର୍ଦ୍ଦୟ ପ୍ରେମିକକୁ ପ୍ରେମ କରି, ତା'ରି ହାତରେ ଜୀବନ-ଯୌବନ ଅର୍ପଣ କରି, ଆମେମାନେ ଯେଉଁ ଭୁଲ୍ କରିଥାଇଁ, ତା'ର ଫଳ ଏବେ ଭୋଗ କରିବାକୁ ପଡ଼ିବ । ଭ୍ରମର ଯେପରି ଗୋଟିଏ ଫୁଲରୁ ମଧୁ ଶୋଷି ନେଇ ଆଉ ଗୋଟିଏ ଫୁଲ ପାଖକୁ ଉଡ଼ିଯାଏ, ଶ୍ରୀକୃଷ୍ଣ ଆଜି ଠିକ୍ ସେହିପରି ଆଚରଣ ଦେଖାଇବାକୁ ଯାଉଛନ୍ତି । ସେ ଆଜଯାଏଁ ଆମକୁ ଅତ୍ୟନ୍ତ ପ୍ରେମ କରୁଥିଲେ ବୋଲି ହାବଭାବ ଦେଖାଉଥିଲେ; କିନ୍ତୁ ମଥୁରା ଯିବା ଲାଗି ନିମନ୍ତ୍ରଣ ମିଳିବା ମାତ୍ରେ, ସେ ଆମର ଆଶା ଆକାଙ୍କ୍ଷାକୁ ଧୂଳିସାତ୍ କରିଦେଇ, ଏବେ ନୂତନ ପ୍ରେମିକାଙ୍କ ସନ୍ଧାନରେ ବାହାରି ପଡ଼ିଛନ୍ତି । ଶ୍ରୀକୃଷ୍ଣ ଅତ୍ୟନ୍ତ ନିର୍ଦ୍ଦୟ ଓ କୃତଘ୍ନ.........!

ଏହା ଶୁଣିବାମାତ୍ରେ ଆଉ ଜଣେ ଗୋପିକା ହଠାତ୍ କହିଲା—ସଖି, ତୁମେ ଶ୍ୟାମସୁନ୍ଦରଙ୍କୁ ଏପରି ଲାଞ୍ଛନା ଦେଉଛ କାହିଁକି ? ସେ କେବେହେଲେ କୃତଘ୍ନ ନୁହଁନ୍ତି ।

କିନ୍ତୁ ଶ୍ରୀକୃଷ୍ଣଙ୍କୁ କୃତଘ୍ନ ତଥା ନିର୍ଦ୍ଦୟ କହି ଗାଳି ଦେଉଥିବା ଗୋପୀ କହିଲେ—ମୁଁ ଅବେ ବୁଝିଲି, ଶରୀରଧାରୀ କହିବ ଶ୍ରୀକୃଷ୍ଣ ଅତ୍ୟନ୍ତ ନିଷ୍ଠୁର ତଥା ନିର୍ଦ୍ଦୟ ! ତୁମେ ଚିନ୍ତା କରି ଦେଖିଲ, ଆମେ ଘର, ଦ୍ୱାର, କୁଟୁମ୍ବ ଓ ଗୁରୁଜନ, ସମସ୍ତଙ୍କୁ ଏଡ଼ାଇ ଦେଇ, ଏହାଙ୍କ ପାଇଁ ଗଭୀର ରାତିରେ ବୃନ୍ଦାବନର ନିବିଡ଼ କୁଞ୍ଜକୁ ଧାଇଁ ଯାଉଥିଲେ । ଆମର ଏକମାତ୍ର ଅଭିଳାଷ ଥିଲା—ପ୍ରେମମୟ ମଦନମୋହନ ଆମକୁ ଚିରକାଳ ଲାଗି ତାଙ୍କର ପଦସେବିକା କରିବା ପାଖରୁ ଅନ୍ତର କରିବେ ନାହିଁ । ଆମେ ତାଙ୍କ ପାଇଁ ଯେଉଁ ତ୍ୟାଗ କରିଥାଉଁ; ସେ ଅରେ ହେଲେ ତାହା ବିଚାର କଲେ କି ? ଏହା କୃତଘ୍ନତା ନୁହେଁ ତ, ଅଉ କ'ଣ ବୋଲି କୁହାଯିବ ?

ଏହା ଶୁଣି ଆଉଜଣେ ବ୍ରଜାଙ୍ଗନା ନିତାନ୍ତ ସମ୍ବେଦନଶୀଳା ହୋଇ କହିଲା—ସଖୀଗଣ, ବେଳ ଖରାପ ପଡ଼ିଲେ ସୁନା ମଧ୍ୟ ଭେଣ୍ଟି ହୋଇଯାଏ, ମନେହୁଏ—ଆମର ସୌଭାଗ୍ୟରବି ଅସ୍ତାଚଳକୁ ଯିବାଲାଗି ଉଦ୍ୟମ କଲେଣି । କାଲି ରାତିଯାଏଁ ଆମେ ଥିଲେ—ସୌଭାଗ୍ୟବତୀ; କିନ୍ତୁ ଆଜି ରାତିଠାରୁ ମଥୁରାର ନାଗରୀମାନେ ସୌଭାଗ୍ୟଶାଳିନୀ ରୂପେ ପରିଗଣିତା ହେବେ । ଆଜି ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ମଥୁରାଦାଣ୍ଡରେ ଦେଖି, ସେଠାକାର ରମଣୀମାନେ ନେତ୍ର ସାର୍ଥକ କରିବେ, ଆଜି ଶ୍ରୀକୃଷ୍ଣ ରଥରେ ବସି ମଥୁରାର ରାଜଦାଣ୍ଡରେ ଯିବାବେଳେ ମଥୁରାର ସୌଭାଗ୍ୟଶାଳିନୀ ନାରୀମାନେ ଗୃହଦ୍ୱାର, ସୌଧଶିଖର, ହର୍ମ୍ୟର ଗବାକ୍ଷମାନ ଆଗରେ ଉଭାହୋଇ ଶ୍ୟାମସୁନ୍ଦରଙ୍କ ମୁଖାରବିନ୍ଦ ଅବଲୋକନ କରି ନିଜ ନିଜର ସୌଭାଗ୍ୟକୁ ଶତମୁଖରେ ପ୍ରଶଂସା କରିବେ । ସେମାନେ ଓଢ଼ଣାର ଉହାଡ଼ରେ ରହି ଶ୍ରୀକୃଷ୍ଣ ବଦନକମଳରୁ ଝରି ପଡ଼ୁଥିବା ମଧୁରହସ ଆକଣ୍ଠ ପାନ କରି ପରିତୃପ୍ତା ହେବେ । ଶ୍ୟାମସୁନ୍ଦର ମଥୁରାର ନାଗରୀମାନଙ୍କ ପ୍ରେମପାଶରେ ଆବଦ୍ଧ ହୋଇ, ଆମ ପରି ଗ୍ରାମ୍ୟ ଗଉଡ଼ୁଣୀଗୁଡ଼ାଙ୍କୁ ନିମିଷମାତ୍ରକେ ଭୁଲିଯିବେ ।

ଅଉ ଜଣେ ଗୋପନାରୀ ଆଖି ଛଳ ଛଳ କରି କହିଲା—ସଖି, ତୁମେ ମିଥ୍ୟା କହୁନାହଁ । ମଥୁରାର ନାଗରୀମାନଙ୍କ ତୁଳନାରେ ଆମେମାନେ କେଉଁ ଗୁଣରେ ସରିହେବା କହିଲ ? ଆମେ ହେଲେ ଗାଆଁ ଗହଳର ଢାଳୀ, ଅଲକ୍ଷଣୀ ତଥା ଅସୁନ୍ଦରୀ ଗଉଡ଼ୁଣୀ ! ମଥୁରାର ନାରୀମାନଙ୍କୁ ଦେଖିବାପରେ ଶ୍ରୀକୃଷ୍ଣ ଆମକୁ କାହିଁକି ବା ମନେ ରଖିବେ କହିଲ ? ତୁମେ ଜାଣନାହିଁ, ସେ ହେଉଛନ୍ତି—ମାତାପିତାଙ୍କ ଭକ୍ତ । ସେ ଆମକୁ ହୁଏତ ଭୁଲିଯାଇ ପାରନ୍ତି, କିନ୍ତୁ ନନ୍ଦଯଶୋଦାଙ୍କୁ ଦେଖିବାଲାଗି ସେ ନିଶ୍ଚୟ ଗୋପପୁରକୁ ଫେରି ଆସିବେ ? ଆମେ ସେତିକିବେଳେ ତାଙ୍କୁ ଦୂରରୁ ଦେଖି ନୟନ ପବିତ୍ର କରିବା ।

ଏହା ଶୁଣିବାମାତ୍ରେ ଅଉ ଜଣେ ବ୍ରଜବନିତା କହିଲା—ସଖି, ମୁଁ ଦେଖୁଛି ତୁମେ ନିତାନ୍ତ ସରଳା । ନୋହିଲେ କ'ଣ ତୁମେ ଏପରି ମନ ଭୁଲାଣିଆ କଥା କହୁଥା'ନ୍ତ ?

ମଥୁରାର ଯୁବତୀମାନଙ୍କ ମନୋହର ରୂପ, ଭବ୍ୟ ବେଶଭୂଷା ଓ ମନଭୁଲାଣିଆ ଗୁହାଣି ଆଗରେ ଶ୍ରୀକୃଷ୍ଣ ନିଜକୁ ସମର୍ପଣ କରିଦେଇ, ବ୍ରଜପୁରରେ ଥିବା ତାଙ୍କର ପିତାମାତା, ଭାଇବନ୍ଧୁ, ସଖାସହୋଦର ତଥା ଆମମାନଙ୍କୁ ମଧ୍ୟ ସମ୍ପୂର୍ଣ୍ଣରୂପେ ଭୁଲିଯିବେ । ସେ ସେଠାକାର ସୁଖଚକ୍ରରେ ଏପରି ଏକାକାର ହୋଇଯିବେ ଯେ, ଗୋପପୁର, ବୃନ୍ଦାବନ ତଥା ଏଠାକାର ସମସ୍ତ ପ୍ରକାର ମୋହ ତାଙ୍କ ଆଗରେ ତୁଚ୍ଛ ହୋଇଯିବ । ସେ କେବେ ଏଠାରେ ଥିଲେ ବୋଲି ମଧ୍ୟ ଭୁଲରେ ସୁଦ୍ଧା ସ୍ମରଣ କରିବେ ନାହିଁ ।

ଏହାପରେ ଆଉ କେତେଜଣ ଗୋପବାଳା ସମବେତ ସ୍ୱରରେ କହି ଉଠିଲେ— ସଖୀଗଣ, ଆମର ତ ସୌଭାଗ୍ୟ ଅନ୍ଧକାରର କୁହେଳିକା ମଧ୍ୟରେ କେଉଁଠି ଲୁଚିଗଲା; ଆମେ ଅନ୍ୟମାନଙ୍କର ସୌଭାଗ୍ୟକୁ ନିନ୍ଦା କରିବା କାହିଁକି ? ଆହା, ଆଜି ଯେଉଁ ମାର୍ଗ ଦେଇ ଶ୍ରୀକୃଷ୍ଣ ରଥରେ ବସି ଅଗ୍ରସର ହେବେ, ସେ ଅଞ୍ଚଳର ଲୋକମାନଙ୍କ ସୌଭାଗ୍ୟ ବିଷୟରେ ଥରେ ଚିନ୍ତାକରି ଦେଖ ତ ! ସେମାନେ ସକଳ ଗୁଣର ଆଧାର, ମନମୋହନ ଶ୍ରୀଲକ୍ଷ୍ମୀରମଣଙ୍କ ମୁଖପଙ୍କଜ ଦର୍ଶନ କରି କୃତ୍ୟକୃତ୍ୟ ହୋଇଯିବେ । ସାତବଂଶ ଯାଦବ ତଥା ଅନ୍ୟାନ୍ୟ ବର୍ଣ୍ଣର ସ୍ତ୍ରୀ ପୁରୁଷମାନେ ପରମାନନ୍ଦମୟ ଗୋପୀଜନବଲ୍ଲଭ ଶ୍ୟାମସୁନ୍ଦରଙ୍କ ଅପାସୋରା ବଦନ ସୁଷମାର ଅବଲୋକନରେ ଜନ୍ମଜନ୍ମାନ୍ତରର ଦୁଷ୍କୃତ ଦୂର କରିଦେବେ ।

ହେ ସଖୀଗଣ, ଆମେମାନେ ଯେପରି ଗୋପଦାଣ୍ଡରେ ଶ୍ରୀକୃଷ୍ଣଙ୍କ ଚନ୍ଦ୍ରବଦନ ଅବଲୋକନ କରି, ଜୀବନକୁ ସାର୍ଥକ କରୁଥିଲେ, ଠିକ୍ ସେହିପରି ମଥୁରାର ନରନାରୀ-ଗଣ ପ୍ରେମମୟ ତଥା ଗିରିଲୀଳାଧର ଯଦୁନନ୍ଦନଙ୍କୁ ଦେଖି, ଆତ୍ମବିସ୍ମୃତ ହେବା ସଙ୍ଗେ ସଙ୍ଗେ ତାଙ୍କୁ ପ୍ରଦକ୍ଷିଣ କରି, ଭବ୍ୟ ଆଡ଼ମ୍ବର ସହକାରେ ସମ୍ବର୍ଦ୍ଧନା ଜଣାଇବେ ।

ସୂତମୁନି କହିଲେ—ହେ ମୁନିଗଣ, ଏପରି ଅନେକ ପ୍ରକାର କଳ୍ପନା ଜଳ୍ପନା କରି, ଗୋପିନୀମାନେ କପାଳରେ କର ମାରି ଉଚ୍ଚସ୍ୱରରେ ବିଳାପ କରିବାକୁ ଲାଗିଲେ ।

## ଛପ୍‌ପୟ

କହେଁ ବିଧାତା ପରମ ଅଜ୍ଞ ତୂ ବାଲକ ସମ ହୈ ।
ସୁନ୍ଦର ଶ୍ୟାମ ସ୍ୱରୂପ ଦିଖାୟୋ ହମେ ପ୍ରଥମ ହୈ ॥
ଭଈ ତୃପ୍ତି ନହିଁ ତଭି ଛୀନବେ ଅବ୍ ତୂ ଆୟୋ ।
କାମ କ୍ରୂର ଅତି କରେ ନାମ ଅକ୍ରୂର ଧରାୟୋ ॥
ଭୟେ ଗୋପ ବୌରେ ସକଲ, ଜାଔଁ ହମ କହିକେ କଟ ॥
ପରମ କ୍ରୂର ଅକ୍ରୂର ହୈ, ନନ୍ଦନନ୍ଦନ କର୍ଦ୍ଦୟ କପଟ ॥



# ବିରହିଣୀ ବ୍ରଜବାଳା

ଏବଂ ବ୍ରୁବାଣା ବିରହାତୁରା ଭୃଶଂ
ବ୍ରଜସ୍ତ୍ରିୟଃ କୃଷ୍ଣବିଷକ୍ତମାନସାଃ ।
ବିସୃଜ୍ୟ ଲଜ୍ଜାଂ ରୁରୁଦୁଃ ସ୍ମ ସୁସ୍ୱରଂ
ଗୋବିନ୍ଦ ଦାମୋଦର ମାଧବେତି ॥

(ଶ୍ରୀଭା୧୦ସ୍କ. ୩୯ଅ. ୩୧ ଶ୍ଳୋ)

## ଛପ୍ପୟ

ରଥ୍ ପର୍ ବୈଠତ୍ ଶ୍ୟାମ ନିରଖି ହମକୁଁ ମୁଖ ମୋ'ରେଂ ।
ଲଖେଓ୍ୱ ଛକେଲ ଗୋପ ବୈଲ ତିନ ମେଁ ତେ ଜୋରେଂ ॥
ଜାହୁଁ କହାଁ ଜା କରେଁ ନିବାରୈ ହରିକୁଁ କୈସେ ।
କରେ ଇଜ ତଜି ଓ୍ୱହୀ ରହେ ମାଧବ ବ୍ରଜ ଜୈସେ ॥
ରଥ ପଥମହଁ ଲେଟୋ ସକଲ, ସତ୍ୟାଗ୍ରହ ସବ ମିଲି କରେ ।
ଜାନ ନ ଘାଓଁ ନନ୍ଦନନ୍ଦନ, ଲୋକ ଲାଜ ଚୂହ୍ଲେ ପରେ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ବ୍ରଜସୁନ୍ଦରୀମାନେ ପରସ୍ପର ମଧ୍ୟରେ ଏପରି ଭାବରେ ବାର୍ତ୍ତାଳାପ କରୁଛନ୍ତି । ସେମାନଙ୍କ ମନ ଶ୍ରୀକୃଷ୍ଣଙ୍କଠାରେ ଆସକ୍ତ ହୋଇ ଯାଇଛି । ସେମାନେ ଲୋକଲଜ୍ଜା ଛାଡ଼ି 'ହେ ଗୋବିନ୍ଦ' ! 'ହେ ଦାମୋଦର' !! 'ହେ ମାଧବ !!!' ନାମ ସ୍ମରଣ ପୂର୍ବକ ସୁସ୍ୱରରେ ରୋଦନ କରୁଛନ୍ତି ।

ଅତ୍ୟନ୍ତ ଶୋକ, ଅତିଶୟ ଆନନ୍ଦ ତଥା ମାଙ୍ଗଳିକ କୃତ୍ୟମାନଙ୍କରେ ଲୋକଲଜ୍ଜା ସମ୍ପର୍କରେ ବିଚାର କରାଯାଏ ନାହିଁ । ସର୍ବୋପରି ଶୋକାକୁଳ ପରିବେଶରେ ନାରୀମାନେ ଲୋକଲଜ୍ଜା ବିଷୟରେ ଆଦୌ ଦୃଷ୍ଟି ଦିଅନ୍ତି ନାହିଁ । ସେମାନେ ସେପରି ମୁହୂର୍ତ୍ତରେ ଶରୀରର ଅଙ୍ଗପ୍ରତ୍ୟଙ୍ଗ ପ୍ରତି ଦୃଷ୍ଟି ନ ଦେଇ, ବେଳେବେଳେ ସାମାଜିକ ମର୍ଯ୍ୟାଦା ଉଲ୍ଲଙ୍ଘନ କରିଥା'ନ୍ତି । କେତେବେଳେ କ'ଣ କହିବାକୁ ହେବ, ସେ ଧାରଣା ମଧ୍ୟ ସେମାନଙ୍କର ରହେ ନାହିଁ । ସ୍ୱାଭାବିକ ଭାବରେ ମନକୁ ଯାହା ଆସେ, ସେମାନେ ନିର୍ବିକାର ଚିତ୍ତରେ ତାହାହିଁ କହି ଦିଅନ୍ତି ।

ସୂତମୁନି କହିଲେ—ହେ ମୁନିଗଣ, ଶ୍ରୀକୃଷ୍ଣଙ୍କ ମଥୁରାଗମନ ସମ୍ବାଦ ଶୁଣି ଗୋପୀମାନେ ବ୍ୟାକୁଳ ହୋଇ ଉଠିଲେ । ସେମାନେ ଅକ୍ରୂର ଉପରେ କ୍ରୋଧ ପ୍ରକାଶ କରି କହିଲେ—ଏହି କଂସର ଦୂତ ଅକ୍ରୂର କେବଳ କ୍ରୂର ନୁହେଁ, ଅଭିମାନୀ ମଧ୍ୟ । ଶ୍ୟାମସୁନ୍ଦର ଗୋପୀନାଥଙ୍କ ଉପରେ ଆମର ମଧ୍ୟ ଅଧିକାର ରହିଛି । ସେ ଶ୍ରୀକୃଷ୍ଣଙ୍କୁ ମଥୁରା ନେବାଲାଗି ଚିନ୍ତା କରିବା ପୂର୍ବରୁ, ଆମକୁ ତାଙ୍କ ଯିବା ବିଷୟରେ ପଚାରି ଥାଆନ୍ତେ । କାରଣ, ଅମ ସହିତ ଶ୍ୟାମସୁନ୍ଦରଙ୍କର ସମ୍ପର୍କ ବିଷୟରେ ସେ ଭଲ ଭାବରେ ଜାଣିଛନ୍ତି । କିନ୍ତୁ ସେ ଆମପରି ଦୁଃଖିନୀ ଅବଳାମାନଙ୍କ ସମ୍ବନ୍ଧରେ ଆଦୌ ବିଚାର ନ କରି, ନିଜ ଇଚ୍ଛାରେ ତାଙ୍କୁ ମଥୁରାକୁ ନେଇଯିବାଲାଗି ସଜ ହୋଇଛନ୍ତି । ନନ୍ଦନନ୍ଦନ ଶ୍ରୀକୃଷ୍ଣ ଆମ ନୟନର ତାରା ହୃଦୟର ପ୍ରାଣ ଏବଂ ଜୀବନ ଜୀବନ । ଯେଉଁ ବ୍ୟକ୍ତି ନିର୍ବିଚାରରେ ଆମ ଦୃଷ୍ଟିପଥରୁ ତାଙ୍କୁ ମଥୁରା ନେଇ ଯାଉଛି, ତା' ନାମ ଅକ୍ରୂର କିପରି ହୋଇପାରେ !

ଅନ୍ୟଜଣେ ଗୋପୀ ଆଗେଇ ଆସି କହିଲା—ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ—ଏ ବିଷୟରେ କେହି ଜଣେ ହେଲେ ପ୍ରତିବାଦ କରୁ ନାହିଁ । ବରଂ ସମସ୍ତେ ଆନନ୍ଦ ଉଲ୍ଲାସରେ ମାତି ଏଣେତେଣେ ଧାଁ ଦଉଡ଼ କରିବାରେ ଲାଗିଛନ୍ତି । ଗୋପାଳମାନେ ମନଫୁଲାଣିଆ ଗୀତ ଗାଇ, ଶଗଡ଼ରେ ଭାର ସଜାଡ଼ିବାରେ ଲାଗିଛନ୍ତି । ସମସ୍ତେ ଏପରି କାମରେ ମାତି ଯାଇଛନ୍ତି ଯେ, ସତେଅବା ସମସ୍ତେ ବରଯାତ୍ରୀ ଦଳରେ ବାହାରିଛନ୍ତି । ଆମ ଆଡ଼କୁ କେହି ଜଣେ ହେଲେ ଆଶ୍ୱାସନା ପୂର୍ଣ୍ଣ ଦୃଷ୍ଟିରେ ଚାହୁଁ ନାହିଁ ।

ସଖି, ଗୋପପୁରର ପୁରୁଷମାନଙ୍କ ଟୀକା ଟିପ୍ପଣୀ ଆଡ଼କୁ ଥରେ କାନ ଦେଇ ଶୁଣ । ସେମାନେ ଆମର ଏ ଅସହାୟ ଅବସ୍ଥାରେ କିପରି ଆମକୁ ଉପହାସ କରୁଛନ୍ତି ! ଏମାନେ କେହି ହେଲେ ଆମର ହୃଦୟର ଭାବନାକୁ ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ସେଇଥି ପାଇଁ ସେମାନେ ଏପରି ଉଦାସୀନ ଭାବରେ ଆଲୋଚନା କରୁଛନ୍ତି ।

ଏହି ସମୟରେ ଜଣେ ଗୋପୀ ଆଗେଇ ଆସି କହିଲା—ସଖି, ତୁମେ ସେମାନଙ୍କ ଆଲୋଚନା ଆଡ଼କୁ କାନ ଡେଥ ନାହିଁ । ଏମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଶ୍ୟାମସୁନ୍ଦରଙ୍କ ମଥୁରା ଯାତ୍ରାର ବିରୋଧ କରୁ ନାହାନ୍ତି । ସମସ୍ତେ ଏକ ସ୍ୱରରେ ଶ୍ୟାମଘନଙ୍କ ମଥୁରା ଯାତ୍ରାକୁ ସ୍ୱାଗତ କରୁଛନ୍ତି । ଚାଲ ଆମେମାନେ ମିଳିମିଶି ଶ୍ରୀକୃଷ୍ଣଙ୍କ ମଥୁରାଯାତ୍ରାର ବିରୋଧ କରିବା । ଦେଖ, ଶ୍ରୀକୃଷ୍ଣ ମଧ୍ୟ ସାଜସଜ୍ଜାରେ ସଜ୍ଜିତ ହୋଇ ରଥଉପରେ ଯାଇ ବସି ପଡ଼ିଲେଣି । ହାୟ, ବିଧାତା ! ଏଇଲେ ଅକ୍ରୂରକୁ ସର୍ପଦଂଶନ କରୁ ନାହିଁ କାହିଁକି ? ନାଃ, ବିଧାତା ମଧ୍ୟ ଆମର ପ୍ରତିକୂଳ ଆଚରଣ କରୁଛନ୍ତି । ଚାଲ, ଆମେମାନେ ଏହି ଯାତ୍ରାରେ ବିଘ୍ନ ଘଟାଇ ଶ୍ୟାମସୁନ୍ଦରଙ୍କୁ ମଥୁରା ଛାଡ଼ିବା ନାହିଁ । ବରଂ ତାଙ୍କୁ ବଳପୂର୍ବକ ରଥରୁ ଓହ୍ଲାଇ ଆଣିବା ।

ଅନ୍ୟ ଜଣେ ବୟସ୍କା ଗୋପୀ ବାହାର ଆସି କହିଲା—ଆମମାନଙ୍କର ଏ କାର୍ଯ୍ୟ ଆଦୌ ଭଲ ହେବ ନାହିଁ । ଲୋକେ କ'ଣ କହିବେ ? ଶାଶୂ, ଶ୍ୱଶୁର, ଦେଢ଼ଶୂର ଓ ପତି କ'ଣ ଭାବିବେ ?

ତା'ପର ପ୍ରଥମେ କହୁଥିବା ଗୋପିକା ଅଧିକ ଉତ୍ତେଜିତ ହୋଇ କହିଲା—ଶାଶୂ ଶ୍ୱଶୁର ଓ ଦେଢ଼ଶୂର କ ନୂଆଁ ପାଉଁଶ କହିବେ ? ସେମାନେ କହିଲେ, କହୁଥାଆନ୍ତୁ ! ଅମେ ତାହାର କଥା ଶୁଣିବା ନାହିଁ । ମରିବାକୁ ଯାଉଥିବା ଲୋକ ସବୁକିଛି କରିପାରେ । ଯାହାର ପ୍ରାଣପକ୍ଷୀ ହୃଦୟ ରୂପକ ପିଞ୍ଜରାରୁ ଉଡ଼ିଯାଉଛି, ସେ ଲୋକଲଜ୍ଜାକୁ ବିଚାର କରିବ କାହିଁକି ? ସଖୀଗଣ, ତୁମେମାନେ ଥରେ ବିଚାର କରି ଦେଖିତ ! ଆମେମାନେ ଗୋବର୍ଦ୍ଧନଧାରୀ ଗୋବିନ୍ଦଙ୍କୁ ନ ଦେଖିଲେ, ସତରେ କ'ଣ ଜୀବନ ଧାରଣ କରି ପାରିବା ?

ଏହାଶୁଣି ଆଉ ଜଣେ ଗୋପୀ ଆଗେଇ ଆସି କହିଲା—ସଖୀଗଣ, ଆଜିଯାଏଁ ଆମେମାନେ ଯେଉଁ ଶ୍ୟାମସୁନ୍ଦରଙ୍କ ମଧୁମୟବାଣୀ, ପ୍ରେମପୂର୍ଣ୍ଣ ବ୍ୟବହାର, ଲୀଳାମୟ କଟାକ୍ଷ ଓ ନଭଭୃକୁଞ୍ଚିତ ମିଳନବିନା ଗୋଟିଏ ମୁହୂର୍ତ୍ତି ମଧ୍ୟ ଧୈର୍ଯ୍ୟ ଧରି ରହିପାରୁ ନଥିଲେ, ସେହି ଶ୍ରୀକୃଷ୍ଣ ମଥୁରା ଚାଲିଯିବା ପରେ ଅମେ ଜୀବନଧାରଣ କରିବା କିପରି ? କାଲିଯାଏ ଯାହା ଆମର ସୌଭାଗ୍ୟ ବୋଲି ଆମେ ମନେ କରୁଥିଲେ, ଆଜିଠାରୁ ତାହା ମଥୁରା ରମଣୀମାନଙ୍କର ସୌଭାଗ୍ୟ ରୂପେ ପରିଗଣିତ ହେବ । ଯାହାରିକି ପ୍ରେମପୂର୍ଣ୍ଣ ଆଲିଙ୍ଗନ ମଧୁର ହାସ୍ୟରେଖା ଓ ଲୀଳାପୂର୍ଣ୍ଣ ବ୍ୟବହାର ଆମକୁ ନବଜୀବନ ଦାନ କରୁଥିଲା, ଆଜି ସେହି ନବଜଳଧର ଶ୍ୟାମସୁନ୍ଦର ଆମ ନିକଟରୁ ଦୂରେଇ ଯାଇ ମଥୁରାରେ ରହିବେ; ଏହା କ'ଣ ଆମେ ସହ୍ୟ କରି ପାରିବା ? ଶ୍ୟାମସୁନ୍ଦରଙ୍କ ସହିତ ସେହି ମଧୁମୟ ହାସ ବିଳାସ ଅଉ ଆମ ଭାଗ୍ୟରେ ନାହିଁ । ଯାହାଙ୍କ ସହିତ ପୂର୍ଣ୍ଣିମାଚନ୍ଦ୍ର ରାତିରେ ଆମେ ବର୍ଷା, ଶରତ ଓ ବସନ୍ତ କାଳରେ ରାସ-ରସରେ ମଜ୍ଜି ଯାଉଥିଲେ, ତାଙ୍କୁ ଛାଡ଼ି ଦେଇ ଆମ ଜୀବନ ଧାରଣର ମୂଲ୍ୟ କ'ଣ ? ଏପରି ଅଧିକ କେତେ କ'ଣ କହିବା ପରେ ସେ ଗୋପିକାର କଣ୍ଠରୋଧ ହୋଇଗଲା ।

ସୂତମୁନି କହିଲେ—ହେ ମୁନିଗଣ, ଏତିକିବେଳେ ଅନ୍ୟ ଜଣେ ଗୋପବାଳା ଛଳ ଛଳ ଆଖିରେ କହିଲା—ମୋର ପ୍ରିୟସଖୀଗଣ, ମୁଁ ମଦନମୋହନଙ୍କର ଯେଉଁ ଭୁବନମୋହନ ରୂପକୁ, ମୋର ହୃଦୟ ସିଂହାସନରେ ବସାଇଛି, ସେହି କମନୀୟ ମୂର୍ତ୍ତିକୁ ଧ୍ୟାନ କରି, ସାରା ଜୀବନ ବିତାଇ ଦେବି । ମୁଁ ଆଜି ଯାଏ ଯେଉଁ ଅଲୌକିକ ଲାବଣ୍ୟ ଛବିକୁ ସନ୍ଧ୍ୟା, ସକାଳ ଓ ସାରାଦିନ ଝୁରି ହୋଇ କାଳ ବିତାଇଛି, ଅବଶିଷ୍ଟ ଜୀବନକାଳ ସେହି ସ୍ୱରୂପକୁ ଧ୍ୟାନ କରି କଟାଇ ଦେବି ।

ଏହି ସମୟରେ ଆଉ ଜଣେ ଗୋପଯୁବତୀ ଆଗେଇ ଆସି କହିଲା—ସଖି, ତୁମେ ଶ୍ରୀକୃଷ୍ଣଙ୍କର କେଉଁ ସମୟର ମୂର୍ତ୍ତିକୁ ହୃଦୟ ସିଂହାସନରେ ବସାଇ ପାରିଛ କହିଲ ?

ସଖୀର ପ୍ରଶ୍ନ ଶୁଣି ଗୋପାଳିକା କହିଲା—ସଖି, ଗୋଧୂଳି ଲଗ୍ନରେ ହାତରେ ବେଣୁଧରି' ଶିରରେ ମୟୂରପୁଚ୍ଛ ଓ ଅଣ୍ଟାରେ ଜାମୁଡ଼ାଳ ଖୋଷି, ଶତସହସ୍ର ଗାଈ ଓ ବାଛୁରିଙ୍କ ପଛେ ପଛେ ତ୍ରିଭଙ୍ଗ ଠାଣିରେ ଗୋପବାଳକଙ୍କ ମେଳରେ ନାଚ ନାଚ ଆସୁଥିବା ଗୋପାଳକୃଷ୍ଣଙ୍କ ମଧୁମୟୀ ମୂର୍ତ୍ତି ମୋ' ହୃଦୟ ସିଂହାସନରେ ମୁଁ ଅତି ଯତ୍ନରେ ସଜାଡ଼ି ରଖିଛି । ମୁଁ ଜାଣୁଛି— ଆଜଠାରୁ ଆଉ ସେ କମନୀୟ ମୂର୍ତ୍ତି ଦେଖିବାକୁ ମିଳିବ ନାହିଁ । ଆଉ ସେ ସୁଖଦ ଆଲିଙ୍ଗନ ଆମ ଭାଗ୍ୟରେ ନାହିଁ । ତାଙ୍କର ସେହି ଭୁବନ ମନୋହର ବେଶ ଆଉ ନୟନପଥରେ କେବେହେଲେ ପଡ଼ିବ ନାହିଁ । ତଥାପି ମୁଁ ମୋର ସେହି ଅଭୁଲନୀୟ ନିଧିକୁ ଗଣ୍ଠି ଧନ କରି, ସାରାଜୀବନ ସେହି ମୂର୍ତ୍ତି ସ୍ମରଣରେ ବିତାଇ ଦେବି ।

ସୂତମୁନି କହିଲେ—ହେ ମୁନିଗଣ, ଗୋପରମଣୀମାନେ ଅରୁଣୋଦୟ ପୂର୍ବରୁ ଆସି ନନ୍ଦରାଜାଙ୍କ ଦୁଆରେ ଠୁଳ ହୋଇ, ଏପରି ନାନା ଛନ୍ଦରେ ଗୃହିବା ସଙ୍ଗେ ସଙ୍ଗେ ଅନ୍ତିମ ସ୍ୱରରେ ରୋଦନ କରିବାକୁ ଲାଗିଲେ । ଏହା ମଧ୍ୟରେ ସୂର୍ଯ୍ୟୋଦୟ ହୋଇଗଲା । ଅକ୍ରୂର ନିତ୍ୟକର୍ମ ଶେଷ କରି ଆସିଗଲେ । ମାତା ଯଶୋଦା ଅକ୍ରୂରଙ୍କ ସହିତ ରାମ ଗୋବିନ୍ଦଙ୍କୁ ଶେଷଥର ପାଇଁ ତାଙ୍କ ମନଲାଖି ଜିନିଷମାନ ଖୁଆଇଲେ । ସେତେବେଳେ ତାଙ୍କ ଆଖିରୁ ଝରଝର ହୋଇ ଲୁହ ଝରିପଡ଼ୁଥିଲା ଏବଂ ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥିଲା ।

ଜଳପାନ ଶେଷ କରି ଅକ୍ରୂର ଆଗେ ଆଗେ ଚାଲିଲେ ଏବଂ ରାମକୃଷ୍ଣ ମଧ୍ୟ ଧୀରେ ଧୀରେ ତାଙ୍କ ଅଗ୍ରସର ହେଲେ । ପିତାଙ୍କ ପଛେ ପଛେ ରୋହିଣୀ ଓ ଯଶୋଦା ଆଖିରୁ ଧାରଶିଧାରଣ ଝରାଇ ଅଗେଇ ଚାଲିଲେ । ଅକ୍ରୂର ରଥ ଉପରକୁ ଉଠିଆସି ଘୋଡ଼ା-ଲଗାମ ଧରି ବସି ପଡ଼ିଲେ । ତା'ପରେ ରଥ ଉପରକୁ ଉଠିଗଲେ—ରୋହିଣୀକୁମର ବଳଦେବ । ତାଙ୍କ ପରେ ମୁହଁ ତଳକୁ କରି, କାହାର ଆଡ଼କୁ ଟେରେହେଲେ ନ ଗୃହିଁ, ଶ୍ୟାମସୁନ୍ଦର ରଥ ଉପରକୁ ଚଢ଼ିଗଲେ ।

ହେ ମୁନିଗଣ, ଆଉ ଗୋପୀମାନଙ୍କୁ ସମ୍ଭାଳେ କିଏ ? ହାୟ ଗୋବିନ୍ଦ ! ହାୟ ଗୋପଜୀବନ !! ହାୟ ଶ୍ୟାମସୁନ୍ଦର !!! କହି ଗୋପୀମାନେ ରଥର ଚାରିପଟେ ଘେରିଗଲେ । ଗୋପୀମାନେ ଲକ୍ଷ୍ୟକଲେ—ମାତା ଯଶୋଦା ବେଶବାସ କେଶ ଅସମ୍ଭାଳ ହୋଇ ରଥ ଚାରିପଟେ ଘୂରି ବୁଲୁଥିଲେ । ତାଙ୍କ ତୁଣ୍ଡରୁ ପଦେ ହେଲେ କଥା ବାହାରୁ ନ ଥିଲା, କେବଳ ଆଖିରୁ ଝରୁଥିଲା—ଅବଶ୍ରାନ୍ତ ଲୁହର ଝର ! ଶେଷକୁ ତାଙ୍କ ଧୈର୍ଯ୍ୟର ବନ୍ଧ ବାଲିବନ୍ଧ ପରି ଭୁଶୁଡ଼ି ପଡ଼ିଲା । ସେ ଚତ୍କାର କରି କହି ଉଠିଲେ—କଂସ ପଛକେ ମୋର ସମସ୍ତ ଗୋଧନ ନେଇଯାଉ କମ୍ବା ସକଳ ସମ୍ପତ୍ତି ଉଜାଡ଼ି ଦେଉ, କିନ୍ତୁ ମୁଁ ମୋର ନୟନପିତୁଳା ରାମକୃଷ୍ଣଙ୍କୁ ମଥୁରା ଛାଡ଼ିବି ନାହିଁ । କଂସର ଧନୁଯାତ୍ରା ଗୋଟାଏ ଛଳନା । ସେ ଏହା ମଧ୍ୟରେ କେତେ କୂଟକପଟର ଜାଲିକା ଲଗାଇ, ମୋ' ଅନ୍ଧର ଲଉଡ଼ିକୁ

ଧରନେବା ଲାଗି ବସିଥିଲା, କିନ୍ତୁ ଦଇବ ତା'ର ଅଭିଳାଷ ପୂରଣ କଲେନାହିଁ; କିନ୍ତୁ ଏଥର ତା'ର ଆଶା ପୂରଣ ହେବ ! ଏ' କଥା କେହି ଜଣେ ହେଲେ ବୁଝିପାରୁ ନାହିଁ କାହିଁକି ?

ହାୟ, ମୋ' ଝୁଅ ବହେଁ ଭୋଜଅଭୂର୍ଗ୍ର ଓ ଖାଇବାରଙ୍କ । ଅଥ କଏ ତାଙ୍କ ମନଜାଣି ଖୁଆଇବ ? ଅଥ ତାଙ୍କ ଅଳ-ଅର୍ଦ୍ଦଳ ସହି କଏ ତାଙ୍କୁ ଦଧି, ଦୁଧ, ସର ଲବଣୀ, ଗୋଟିକା, ଅଧାମ ଖୁଆଇବ......? ଭୋକରେ ମୋ' ଝୁଅ ବହିଙ୍କ ଶ୍ରୀମୁଖ ଝାଉଁଳ ପଡ଼ିବ ! ମୁଁ ଶୁଣିଛି—ମଥୁରା ଗୋଟିଏ ବଶାଳ ନଗର । ସେଠାରେ ହାତୀ, ଘୋଡ଼ା, ରଥ ପଣ ପଣ ହୋଇ ବୁଲୁଛନ୍ତି; କିନ୍ତୁ ମୋ' ଶ୍ୟାମସୁନ୍ଦର ଗୋଧନ ରଙ୍କ । କଅଁଳା ବାଛୁରର ପଛେ ପଛେ ଧାଇଁବାକୁ ସେ ସୁଖପାଏ । କାଳୀଗାଇର ଦୁଧ ତାକୁ ସୁଆଦିଆ ଲାଗେ । ମଥୁରାରେ ଏ, ସବୁ ମିଳିବ କେଉଁଠୁ ?

କେହିହେଲେ ମୋତେ ମଥୁରା ନେଇଯାଅ । ମୁଁ ସମସ୍ତ ଜାଣି ମୋ' ଝୁଅବହିଙ୍କି ଆଧାର ଦେବି । ତାଙ୍କ ମନ ଜାଣି ଖୁଆଇବ । ମୁଁ ଏଠାରେ ଏକାକିନୀ ରହି କରିବ କ'ଣ ? ହାୟ, ବିଧାତା ବାମହେଲେ, ଆପଣା ମଧ୍ୟ ପର ହୋଇଯାଏ !

ହେ ମୁନିଗଣ, ମାତା ଯଶୋଦା ଏହିପରି ଭାବରେ ଆର୍ତ୍ତସ୍ୱରରେ ବିଳାପ କରି, ଶେଷରେ ମୂର୍ଚ୍ଛିତା ହୋଇ ତଳେ ପଡ଼ିଗଲେ ।

### ଛପ୍ପୟ

କେତେ ଅବଳ ନାରୀ ଜଓ୍ୱାଟେଁ ହରକଁ ବଲଟେଁ ।
ନହିଁ ଦୀଖେଁଗେ ଶ୍ୟାମ ହାୟ ! ଅବ ବ୍ରଜମହଁ କଲ୍‌ଟେଁ ॥
ଅବ ନ ମନ୍ଦ ମୁସୁକାନୟୁତ ମୁଖ ମନମୋହନକୋ ।
ଦୀଖୈଁଗୋ ନହିଁ ମିଟୈ ତାପ ସନ୍ତାପିତ ତନକୋ ॥
ନଶା ବତାଇ ଶ୍ୟାମ ସଁଗ, କହତ କକୁଞ୍ଜନକମହଁ ସରସ ।
ମିଲେଁ ନ ସପନାସମହଁ, ଅବ ଅଙ୍ଗନ ହର ଦରଶ ॥



# ରାମ-କୃଷ୍ଣଙ୍କ ମଥୁରା ଗମନ

ସ୍ତ୍ରୀଣାମେବଂ ରୁଦତୀନାମୁଦିତେ ସବିତର୍ଯ୍ୟଥ ।
ଅକ୍ରୂରଶ୍ଚୋଦୟାମାସ କୃତମୈତ୍ରାଦିକୋ ରଥମ୍ ॥

(ଶ୍ରୀ.ଭା. ୧୦ସ୍କ. ୩୯ଅ. ୩୨ଶ୍ଳୋ)

## ଛପ୍‌ପୟ

ଉଡ଼ୁଗଣ ତେଜ ମଲୀନ କରନ୍ତି ପୂଜ ଉଦେ୍ୟ ଉଦିତ ରବି ।
ବ୍ରଜବନିତାଙ୍କୋ ବିରହ ଦୁସହ ଅତି ବରନେ କୋ କବି ॥
ରାମ-ଶ୍ୟାମ ରଥ ଚଢ଼େ ଯଶୋଦା ରୋଓତ ଆଇ ।
ରଥକେ ଚକ୍ରନ୍ତି ଓର ଫିରେ ଶିଶୁ ବିନୁ ଜିମି ଗାଇ ॥
କୁରରୀ ସମ ରୋଓତ ସକଲ, ରାମ! ଶ୍ୟାମ !ସବ ମିଲି କହତ ।
ତକରାଓତି ହା ହା କରତି, ଅଶ୍ରୁଧାର ସବକେ ବହତି ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍‌ ! ଏହିପରି ଭାବରେ ସକଳ ଗୋପୀ ରୋଦନ କରୁ କରୁ ସୂର୍ଯ୍ୟୋଦୟ ହୋଇଗଲା । ଅକ୍ରୂର ମଧ୍ୟ ସ୍ନାନ ସୂର୍ଯ୍ୟୋପାସନା ଆଦି ଶେଷ କରି ରଥରେ ବସିପଡ଼ିଲେ ଏବଂ ସେ ରଥଟିକୁ ମଥୁରା ଅଭିମୁଖେ ଚଳାଇନେଲେ ।

ନିଜର ସବୁଠାରୁ ଅଧିକ ପ୍ରିୟ ବସ୍ତୁ କାଲି ଘରୁ ଚାଲିଯିବ—ଏହା ଶୁଣିବାମାତ୍ରେ ଚିତ୍ତ ବିକଳ ହୋଇଯାଏ ଏବଂ ମନରୁ ଧୈର୍ଯ୍ୟଚ୍ୟୁତ ଘଟି ଅଧୀରତା ବଢ଼ାଏ । ଖାଇବା ପିଇବାରେ ମନ ଲାଗେନାହିଁ । ଜଗତଟା ଶୂନ୍ୟ ବୋଧହୁଏ । ଏହାକୁ କୁହାଯାଏ— ବିରହଦଶା । ଆଜି ଯାହା ଆଖି ଆଗରେ ରହିଛି, କାଲିକି ସେ ଆଖି ଆଗରୁ ହଟିଯିବ—ଏଭଳି ଭାବନା ମନ ମଧ୍ୟରେ ଉଦିତ ହେଲେ, ମନୋଭାବ ଯାହା ହେବ, କେବଳ ଅନୁଭବୀ ହିଁ ତାହା ବୁଝିପାରିବ । ବିଚ୍ଛେଦର ସମୟ ଆସି ନ ଥିଲେ, ମନରେ କେତେ ପ୍ରକାର ଆଶାଭରସା ଉଙ୍କିମାରେ । କାଳେ କୌଣସି ଉପାୟରେ ବିପଦ ଟଳି ଯିବ କି ? ଆତୁର ବିରହଦଶା ପୂରୁଣା ହୋଇଗଲେ, ସହନଶକ୍ତି ବୃଦ୍ଧିପାଏ; କିନ୍ତୁ ଜୀବର ଜୀବନ, ଅନ୍ତର ଲହରି, ନୟନରତାରା ତଥା ସୁଖର ପସରା ଆଖି ଆଗରେ ଉଜୁଡ଼ି ଯାଉଥିବା-ବେଳେ ମନର ଅବସ୍ଥା ଯାହାହୁଏ, ତାହା କେବଳ ଭୁକ୍ତଭୋଗୀ ହିଁ ଅନୁଭବ କରିପାରିବ, ସେହି ଅବସ୍ଥାକୁ କେହି ବାକ୍ୟରେ ବର୍ଣ୍ଣନା କରି ପାରିବ ନାହିଁ ।

ସୂତମୁନି କହିଲେ—ହେ ଶୌନକାଦି ମୁନିଗଣ, ବିରହବେଦନାର ବ୍ୟଥିତା ବ୍ରଜାଙ୍ଗନାମାନେ ଲକ୍ଷ୍ୟ କରି ଦେଖିଲେ—ଶ୍ରୀକୃଷ୍ଣଙ୍କ ହସ ହସ ମୁହଁଟି ଝାଉଁଳି ପଡ଼ିଛି ।

ଯେଉଁ ଚନ୍ଦ୍ରବଦନରୁ ସଦାସର୍ବଦା ହସର ବିମଳଝର ଝରିପଡ଼ୁଥାଏ, ସେ ମୁଖଚନ୍ଦ୍ରମାକୁ ରାହୁ ଗ୍ରାସ କଲାପରି ବୋଧ ହେଉଛି, ସେମାନେ ଭାବିଲେ--ଶ୍ରୀକୃଷ୍ଣ ମଥୁରା ଯିବାକୁ ଚାହୁଁଛନ୍ତି ତ, ସେ ଯାଆନ୍ତୁ ! କିନ୍ତୁ ହସ ହସ ମୁହଁଟିଏ ଲୁଣ୍ଡ ଖୋଲି ଆମକୁ କଥାପଦେ କହୁ ନାହାଁନ୍ତି କାହିଁକି ? ତାଙ୍କର ସହଜ ସୁଲଭ ବାଙ୍କଚାହାଣିରେ ଆମ ଆଡ଼କୁ ଅନୁରାଗ-ପୂର୍ଣ୍ଣ ଦୃଷ୍ଟିରେ ସେ ଥରେ ମାତ୍ର ଚାହିଁ ଦେଲେ, ଆମେ କୃତକୃତ୍ୟ ହୋଇ ଯାଆନ୍ତୁ ।

ହେ ମୁନିଗଣ, ସେ ସମୟର ଦୃଶ୍ୟଥିଲା—ନିତାନ୍ତ କରୁଣ ଜନକ । ଅକ୍ରୂରଙ୍କ ରଥ ମଥୁରା ଆଡ଼କୁ ମୁହାଁଇ ଗୋପଦାଣ୍ଡରେ ଛିଡ଼ା ହୋଇଥିଲା । ରଥର ଦୁଇପାର୍ଶ୍ୱ ଓ ଅଗ୍ରଭାଗରେ ଗୋପାଳମାନେ ଯଜ୍ଞ ସମ୍ଭାର ଶଗଡ଼ରେ ସଜାଡ଼ି ରଖି ହୋଇଥିଲେ । ଗୋପାଳବାଳକମାନେ ନୂଆ କରି ମଥୁରା ଯିବାଲାଗି ନାନାପ୍ରକାର ବେଶଭୂଷାରେ ସଜ୍ଜିତ ହୋଇଥିବାରୁ, ସେମାନଙ୍କ ମନ ଆନନ୍ଦରେ ଉଲ୍ଲସି ଉଠୁଥିଲା । ସେମାନେ ଯିବାଲାଗି ବ୍ୟସ୍ତ ହୋଇ ଉଠିଥିଲେ । ନନ୍ଦ ଆଦି ଗୋପପୁରର ମୁଖ୍ୟ ଲୋକମାନେ ମଧ୍ୟ ନିଜ ନିଜର ସାଜସରଞ୍ଜାମ ସଜାଡ଼ିବାରେ ବ୍ୟସ୍ତ ଥିଲେ । ଶେଷରେ ନନ୍ଦରାଜାଙ୍କର ଚିତ୍ର ବିଚିତ୍ର ଶଗଡ଼ଟି ଆସି ପହଞ୍ଚିଗଲା । ସେଥିରେ ଯୋଚାଯାଇଥିବା ବଳଦ ଦୁହିଙ୍କ ବେକରେ ଝୁଲୁଥିବା ଘଣ୍ଟି ଘାଗୁଡ଼ି ରୁଣୁରୁଣୁ ହୋଇ ବାଜି ଉଠୁଥିଲା । ନନ୍ଦରାଜା ଇଷ୍ଟସ୍ମରଣ କରି ଶଗଡ଼ରେ ବସି ପଡ଼ିଲେ ଏବଂ ତା'ପରେ ରଥ ଚାଲିବାର ଉପକ୍ରମ ହୋଇଗଲା ।

ହେ ମୁନିଗଣ, ଗୋପବାଳାମାନେ ଆଉ ଧୈର୍ଯ୍ୟଧରି ରହିପାରିଲେ ନାହିଁ । ସୁଅ ମୁହଁରେ ଥିବା ବାଲିବନ୍ଧ ଭାଙ୍ଗିଗଲା ପରି, ସେମାନେ ପାଗଳିମାନଙ୍କ ପରି ଅଗେଇ ଯାଇ ରଥ ଆଗରେ ଛିଡ଼ା ହୋଇଗଲେ । ସେମାନେ ଗୁରୁଜନଭବ କୁଳର ମାନମହତ୍ତ୍ୱ ପଦାରେ ପକାଇ ଦେଇ, ଅକ୍ରୂରର ରଥକୁ ଚାରିପଟରୁ ଘେରିଯାଇ, ସତୃଷ୍ଣ ନୟନରେ ଏକଲୟରେ ଚାହିଁ ରହିଲେ ଶ୍ରୀକୃଷ୍ଣଙ୍କ ଚନ୍ଦ୍ରବଦନକୁ ; କିନ୍ତୁ ସଜଳ ନଳିନୀଦଳ ପରି ପ୍ରଫୁଲ୍ଲ ଶ୍ୟାମ-ସୁନ୍ଦରଙ୍କ ମୁହଁଟି ଝାଉଁଳି ପଡ଼ିଥିଲା । ସେ ଅପରାଧୀ ପରି, ତଳକୁ ମୁହଁ ପୋତି ରଥ ଉପରେ ବସି ରହିଥିଲେ । ଗୋପିକାମାନଙ୍କ ଆଡ଼କୁ ମୁହଁ ଟେକି ଚାହିଁବାର ସାହସ ସେ ହରାଇ ବସିଥିଲେ । ଗୋପୀମାନେ ଅଗେଇ ଯାଇ ଅକ୍ରୂରକୁ ଧରି ପକାଇଲେ । ସେମାନେ ଚକ୍ଷୁରୁ ଲୋତକର ଧାରା ଛୁଟାଇ କହିଲେ—ଅକ୍ରୂର, ତୁମେ ଆମ ପ୍ରାଣାଧାରଙ୍କୁ ଅପହରଣ କରି ନେଉଛ । ତୁମେ ହୁଏତ ଆମ ଛାତି ଉପରେ ରଥ ଚଳାଇ ଦିଅ କିମ୍ବା ଆମକୁ ତୁମ ସଙ୍ଗରେ ନେଇଯାଅ ।

ଅକ୍ରୂର କହିଲେ—ଦେବି, ତୁମେମାନେ ଏତେ ଅଧୀର ହେଉଛ କାହିଁକି ? ତୁମ ଶ୍ୟାମସୁନ୍ଦର ମଥୁରାରେ ହେଉଥିବା ଧନୁଯାତ୍ରା ଦେଖିବା ଲାଗି ଯାଉଛନ୍ତି । ସେ ସେଠାରେ ମାତ୍ର ଦୁ' ଚାରିଦିନ ରହି, ପୁଣି ଗୋପପୁରକୁ ଫେରି ଆସିବେ ।

ଗୋପୀମାନେ କହିଲେ—ଅକ୍ରୂର, ତୁମେ ତୁମ ମନଗଢ଼ା କଥା କହୁଛ, ଅଥବା ଶ୍ରୀକୃଷ୍ଣଙ୍କ ମନକଥା ଆମ ଆଗରେ ଦୋହରାଇ ଦେଉଛ ?

ଗୋପୀମାନଙ୍କ ପ୍ରଶ୍ନରେ ଅକ୍ରୂର ହତବାକ୍ ହୋଇ ଯାଇଥିବାର ଦେଖି, ତାଙ୍କର ଜରିଆରେ କହିଲେ ଶ୍ରୀକୃଷ୍ଣ—ମୁଁ ତ ଶୀଘ୍ର ଲେଉଟି ଆସିବି !

ଗୋପୀମାନେ ମନେ ମନେ ବିରକ୍ତ ହୋଇ କହିଲେ—ତୁମେ ଫେରି ଆସିବ, ସମସ୍ତ କହୁ ନାହଁ କାହିଁକି ?

ପୁଣି ଶ୍ରୀକୃଷ୍ଣ ଅକ୍ରୂର ମାଧ୍ୟମରେ କହିଲେ—ମୁଁ ଏଇ ସାତ ଆଠ ଦିନ ମଧ୍ୟରେ ଯେ କୌଣସି ଦିନ ଆସି ପୁଣି ତୁମମାନଙ୍କ ସହିତ ମିଶିବି । ଏଥିରେ ଚିନ୍ତାର କୌଣସି କାରଣ ନାହିଁ ।

ସୂତମୁନି କହିଲେ—ହେ ମୁନିଗଣ, ଶ୍ରୀକୃଷ୍ଣ ଅନେକ ପ୍ରକାର ବୁଝାଇ ସୁଝାଇ ଶୋକ ସନ୍ତପ୍ତା ଗୋପୀମାନଙ୍କୁ ରଥ ଆଗରୁ ଦୂରେଇ ଦେଲେ । ଅକ୍ରୂର ରଥ ଚଳାଇବାର ଉପକ୍ରମ କରିବାମାତ୍ରେ, ଗୋପବାଳାମାନେ ହା କୃଷ୍ଣ ହା ମୁକୁନ୍ଦ, ହା ମାଧବ !! କହି ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । ଗୋପୀମାନଙ୍କ ଅବସ୍ଥା ଲକ୍ଷ୍ୟ କରି, ଅକ୍ରୂରଙ୍କ ହୃଦୟ ତରଳିଗଲା । ତାଙ୍କ କେଶପାଶ ଶିଥିଳ ହୋଇଗଲା । ତାଙ୍କ ଅବସ୍ଥା ଦେଖି ଶ୍ରୀକୃଷ୍ଣ କହିଲେ—ପିତୃବ୍ୟ, ଆଉ ବିଳମ୍ବ କରୁଛନ୍ତି କାହିଁକି ? ଶୀଘ୍ର ଶୀଘ୍ର ରଥ ଚଳାନ୍ତୁ । ଗୋପୀମାନଙ୍କର ଏ ଅବସ୍ଥା ଆଉ ଅଧିକ ସମୟ ଦେଖି ହେବ ନାହିଁ ।

ଶ୍ରୀକୃଷ୍ଣଙ୍କ କଥା ଶୁଣି ଅକ୍ରୂର ହୃଦୟକୁ ପଥର କରି, କୌଣସିମତେ ଅଶ୍ୱମାନଙ୍କୁ ଦଉଡ଼ାଉଥିଲେ । ରଥ ତୀବ୍ର ବେଗରେ ଗଡ଼ଗଡ଼ ହୋଇ ଚାଲିବାକୁ ଲାଗିଲା । ଗୋପବାଳୀ-ମାନେ ହା ହତାଶ ହୃଦୟରେ ସେହିଠାରେ ଭୂମିରେ ଗଡ଼ିବାକୁ ଲାଗିଲେ । ଗୋପୀମାନେ ପଛ ପଟୁ ଲକ୍ଷ୍ୟ କରି ଦେଖିଲେ—ରଥ ପଛେ ପଛେ ପ୍ରଚଣ୍ଡ ବେଗରେ ଧୂଳି ଉଠିବାରେ ଲାଗିଛି । ସେହି ଧୂଳିମଧ୍ୟ ଶ୍ୟାମସୁନ୍ଦରଙ୍କୁ ତୀବ୍ରବେଗରେ ଅନୁସରଣ କରିବାରେ ଲାଗିଛି ।

ତାହା ଦେଖି ଗୋପୀମାନେ ଭାବିଲେ—ହା ! ଆମେମାନେ ଯଦି ବାଟରଧୂଳି ହୋଇଥାନ୍ତୁ, ତେବେ ଆମେ ଉଡ଼ିଉଡ଼ି ଯାଇ ଶ୍ୟାମସୁନ୍ଦରଙ୍କ ଶ୍ରୀଅଙ୍ଗରେ ବୋଳି ହୋଇ ଯା'ନ୍ତୁ କିମ୍ବା ତାଙ୍କର କଳା ମଚ୍ ମଚ୍ କୁଞ୍ଚୁକୁଞ୍ଚିଆ କେଶକଳାପରେ ମିଶି ଯାଆନ୍ତୁ । ତା'ରି ଫଳରେ ଆମେ ତାଙ୍କ ସଙ୍ଗରେ ମଥୁରା ଯାଇ ପାରିଥାନ୍ତୁ ! ହାୟ, ଏ ରଥ ହେଉଛି—ଯମର ଅନୁଚର । ତେଣୁ ସେ ହଠ କରି ଆମ ଆଖି ଆଗରୁ ଶ୍ୟାମସୁନ୍ଦରଙ୍କୁ ନେଇ ଯାଉଛି ।

ଗୋପୀମାନେ ଏପରି କେତେ କ'ଣ ଭାବୁଥିବାବେଳେ, ଆଖି ଆଗରୁ ଅକ୍ରୂରର ରଥ ଅଦୃଶ୍ୟ ହୋଇଗଲା । କେବଳ ଦୂରରୁ ତାଙ୍କ ରଥର ଧ୍ୱଜା ଦେଖା ଯାଉଥିଲା । ସତେଅବା, ପତାକାଟି ହାତ ଦୋହଲ ଗୋପୀମାନଙ୍କ ଆଗମନକୁ ବାରଣ କରୁଛି । କଚ

ସମସ୍ତ ପରେ ରଥର ପତାକା ମଧ୍ୟ ଆଖି ଆଗରୁ ଅଦୃଶ୍ୟ ହୋଇଗଲା । କେବଳ ରଥ ଚକରୁ ଉଡ଼ୁଥିବା ଧୂଳି ହିଁ ଦେଖିବାକୁ ମିଳିଲା ।

କିଛି ସମୟପରେ ଧୂଳି ମଧ୍ୟ ଶୂନ୍ୟପଥରେ ମିଳାଇ ଗଲା ଏବଂ ଗୋପୀମାନେ ସେହି ଦଉକୁ ଚାହିଁ ବ୍ରଜଦାଣ୍ଡରେ ପଡ଼ିରହିଲେ । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଗୋପଦାଣ୍ଡଧୂଳିରେ ପଡ଼ିରହିଲେ ସିନା, କିନ୍ତୁ ସେମାନଙ୍କ ଅବୁଝା ମନକୁ ଯେତେ ବାରଣ କଲେ ମଧ୍ୟ ତାହା ଶ୍ରୀକୃଷ୍ଣଙ୍କ ଧ୍ୟାନରେ ନିମଗ୍ନ ରହି ମଥୁରାକୁ ଚାଲିଗଲା । ଶେଷକୁ ବ୍ରଜଯୁବତୀମାନେ ନିଜ ନିଜର ଅନିଚ୍ଛା ସତ୍ତ୍ୱେ, ବ୍ରଜ ଦାଣ୍ଡରୁ ଫେରି ଆସିଲେ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେମାନେ ଭାବୁଥିଲେ—ଶ୍ୟାମସୁନ୍ଦର ସେମାନଙ୍କ ଅବସ୍ଥା ଦେଖି ଲେଉଟି ଆସିବେ; କିନ୍ତୁ ତାହା ସମ୍ଭବ ହେଲା ନାହିଁ ।

ତହୁଁ ସେମାନେ ପୁଣି ଭାବିଲେ—ଶ୍ରୀକୃଷ୍ଣ ଅତ୍ୟନ୍ତ ନିର୍ଦ୍ଦୟ, ନିଷ୍ଠୁର ତଥା ବିଶ୍ୱାସ ଘାତକ । ସେ ତାଙ୍କ ଆମ ମଧ୍ୟରେ ଥିବା ସ୍ନେହ ସମ୍ପର୍କକୁ କୁଟା ଖଣ୍ଡିଏ ଛିଡ଼ାଇଲା ପରି ଛିଡ଼ାଇ ଦେଇଛନ୍ତି । ସେମାନେ ଶେଷରେ ନିରାଶ ହୋଇ ଶ୍ରୀକୃଷ୍ଣ ନାମ କୀର୍ତ୍ତନ, ଗୁଣସ୍ମରଣ, ସୁମଧୁର ଲୀଳାଗାନରେ ଧ୍ୟାନ କରି ସମସ୍ତ ଅତିବାହିତ କରିବାକୁ ଲାଗିଲେ । ସେମାନେ ଶ୍ରୀକୃଷ୍ଣଙ୍କ ମଧୁର ମୂର୍ତ୍ତିକୁ ଧ୍ୟାନ କରିବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଦୁଃଖରେ କାଳଯାପନ କରିବାକୁ ଲାଗିଲେ । ଦୁର୍ଭାଗ୍ୟକୁ ତାଙ୍କର ଦୁଃଖ ରଜନୀ ଧୀରେ ଧୀରେ ବୃଦ୍ଧି ପାଇବାକୁ ଲାଗିଲା ।

ସୂତମୁନି କହିଲେ—ହେ ମୁନିଗଣ, ଶ୍ରୀକୃଷ୍ଣଙ୍କ ବିରହରେ ବ୍ରଜବଧୂମାନଙ୍କର ଯେଉଁ କରୁଣଜନକ ପରିସ୍ଥିତି ହୋଇଥିଲା, ତା'ର ବର୍ଣ୍ଣନା ମୋ' ପକ୍ଷରେ ସମ୍ଭବ ନୁହେଁ, ତାଙ୍କର ପ୍ରେମ ଥିଲା—ଅଲୌକିକ ତଥା ଅନିର୍ବଚନୀୟ । ମୁଁ ଭଳି ଲୌକିକ ମାନବ ହୋଇ ତାହାକୁ ବଚନରେ କିପରି ପ୍ରକାଶ କରିବି ?

ହେ ମୁନିଗଣ, ଏହା ମଧ୍ୟରେ ଅକ୍ରୂର ଯାଇ ଯମୁନା କୂଳରେ ପହଞ୍ଚିଗଲେ । ସେଠାରେ ଶ୍ୟାମସୁନ୍ଦର ଯେଉଁ ଲୀଳା ରଚନା କରିଥିଲେ, ତାହା ମୁଁ ଆପଣମାନଙ୍କୁ ପରବର୍ତ୍ତୀ ପର୍ଯ୍ୟାୟରେ ବର୍ଣ୍ଣନା କରିବି ।

## ଛପ୍‌ପୟ

ଇତ ନନ୍ଦାଦିକ ଗୋପ ସକଲ ମିଲି ଦ୍ୱାରେ ଆୟେ ।
ପାଗ ଦୁପଟା ପହିନ ସ୍ୱୟଂ ସଜି ବୈଲ ସଜାୟେ ।।
ହାଙ୍କେୟା ରଥ ଅକ୍ରୂର ଘଣ୍ଟିକା ଚହୁଁଦିଶି ବାଜୈ ।
ରଥକେ ପୀଛେ ଦୁଃଖିତ ଗୋପିକା ରୋଓତ ଭାଜୈ ।।
ମୂର୍ଚ୍ଛିତ ହ୍ୱୈ ଗୋପୀ ଗିରୀ, ରଥ ଅବ ଆଗେ ବଢ଼ି ଗୟୋ ।
ବୀଥୀ ଧ୍ୱଜ, ରଜ, ଫେର ସବ, ଆଁଖିନତେ ଓଝଲ ଭୟୋ ।।



# ଜଳ ମଧ୍ୟରେ ଅକ୍ରୂରଙ୍କ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଦର୍ଶନ

**ଭଗବାନପି ସଂପ୍ରାପ୍ତୋ ରାମାକ୍ରୂରଯୁତୋ ନୃପ ।**
**ରଥେନ ବାୟୁବେଗେନ କାଳିନ୍ଦୀମଘନାଶିନୀମ୍ ॥**

(ଭାଗବତ-୧୦ସ୍କ, ୩୯-ଅ, ୩୮-ଶ୍ଳୋକ)

**ଛପ୍ପୟ**

ଭଇ ନବଣା ଲୌଟି ସଖୀ ନିଜ ନିଜ ଘର ଆଇ ।
ଇତ ରଥ ଆଗେ ବଢ଼େ୍ୟା ଦଇ ରଜସୁତା ଦିଖାଇ ॥
ରଜ ସିର ଊପର କରହି ହ୍ନାଇବେ ରଥ ଠହରାୟୋ ।
ରାମ-ଶ୍ୟାମ ପୟ ପାନ କରେ୍ୟା ଅକ୍ରୂର ଜତାୟୋ ॥
କୈଠୋ ରଥପୈ ଆଇ ତୁମ, ହ୍ନାଇ କରୂଁ ସନ୍ଧ୍ୟା ଅବହିଁ ।
ଯୌଁ କହି ଜଲ ବୁଡ଼କୀ ଦଇ ଲଖେ୍ୟା ଦୃଶ୍ୟ ଜଲମହଁ ତବହିଁ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ଶ୍ରୀକୃଷ୍ଣ ବାୟୁବେଗରେ ଗତି କରୁଥିବା ରଥରେ ବସି ବଳଦେବ ଓ ଅକ୍ରୂରଙ୍କ ସହିତ ଯାଇ ପାପନାଶିନୀ ଯମୁନା କୂଳରେ ପହଞ୍ଚିଗଲେ ।

ଭକ୍ତର ମନୋକାମନା ପ୍ରଭୁ ନିଶ୍ଚୟ ପୂରଣ କରନ୍ତି ଏବଂ ତା' ମନ ମଧ୍ୟରେ ଯେଉଁ ଶଙ୍କାଜାତ ହୋଇଥାଏ, ତାହାର ସମାଧାନ କରି ଦିଅନ୍ତି । ସେଇଥିପାଇଁ ଭଗବାନ୍‌ଙ୍କ ନାମ ହେଉଛି—ଭକ୍ତ ବାଞ୍ଛା କଳ୍ପତରୁ ତଥା ଭକ୍ତଭୟହାରୀ । ପ୍ରଭୁ ନିଜ ଆଶ୍ରିତ ଜନଙ୍କୁ କେବେହେଲେ ଅବହେଳା କରନ୍ତି ନାହିଁ, କିମ୍ବା ତାଙ୍କୁ ସନ୍ଦିଗ୍ଧମନା କରି ରଖନ୍ତି ନାହିଁ । ସେ ନିଜର ଦିବ୍ୟଜ୍ଞାନବଳରେ ଭକ୍ତର ଅଜ୍ଞାନତା ଦୂର କରିଦିଅନ୍ତି ।

ସୂତ ମହର୍ଷି କହିଲେ—ହେ ମୁନିଗଣ ! ଅକ୍ରୂର ଯେତେବେଳେ ମଥୁରାରୁ ଗୋପପୁରକୁ ଆସିଥିଲେ, ସେତେବେଳେ ସେ ପ୍ରଭୁଙ୍କ ଦିବ୍ୟ ମୂର୍ତ୍ତି ଦର୍ଶନ କରିବାର ସୁଯୋଗ ପାଇ ନଥିଲେ । କାରଣ ସେ ଗୋପପୁରରେ ପହଞ୍ଚିବା ଆଗରୁ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ ଚିନ୍ତା କରି ତନ୍ମୟ ହୋଇ ଉଠିଥିଲେ ଏବଂ ଗୋପପୁରରେ ପହଞ୍ଚିବାକ୍ଷଣି ସେ ଶ୍ରୀକୃଷ୍ଣଙ୍କ ବ୍ୟବହାରରେ ଏତେ ମୁଗ୍ଧ ହୋଇଯାଇଥିଲେ ଯେ, ତାଙ୍କୁ ପ୍ରଭୁପରି ସ୍ନେହ କରିବାକୁ ଲାଗିଲେ । କିନ୍ତୁ ଲେଉଟାଣି ସମୟରେ ସେ ମନେ ମନେ ଭାବିଲେ—ମୁଁ ଶ୍ରୀକୃଷ୍ଣଙ୍କୁ ରଥରେ ବସାଇ ନେଇଆସି ମହାପରାଧ କରିଛି । ଗୋପୀମାନେ ତାଙ୍କୁ ନେହେ

ଅଦର, ସ୍ନେହ ଓ ମମତା ଡୋରରେ ବାନ୍ଧି ରଖିଥିଲେ । ଯଦି କଂସର ଅତ୍ୟାଚାର ଫଳରେ ମଥୁରାରେ ତାଙ୍କର କିଛି ଅନିଷ୍ଟ ହୁଏ, ତେବେ ସାରାଜୀବନ ମୋ' ମୁଣ୍ଡରେ କଳଙ୍କର ଟୀକା ଲାଗି ରହିବ । ମୁଁ ସଂସାରରେ ମୁହଁ ଟେକି ଚାଲିପାରିବି ନାହିଁ । ସମସ୍ତେ ସମସ୍ୱରରେ ମୋତେ ଶ୍ରୀକୃଷ୍ଣଙ୍କ ହତ୍ୟାକାରୀରୂପେ ଅପବାଦ ଦେବେ । ଅକ୍ରୂର ରଥ ଚଳାଉଥିବା ଅବସ୍ଥାରେ ଏହିପରି ଭାବନାରେ ନିମଗ୍ନ ହୋଇ ପଡ଼ିଲେ ।

ଅନ୍ତର୍ଯାମୀ, ଘଟ ଘଟ ନିବାସୀ, ଭକ୍ତବତ୍ସଳ ପ୍ରଭୁ ସମସ୍ତଙ୍କ ମନକଥା ଜାଣି ପାରନ୍ତି । ସେ ଭାବିଲେ--ଅକ୍ରୂରଙ୍କୁ କିଛି ଚମତ୍କାରିତା ଦେଖାଇବାକୁ ହେବ । ନୋହିଲେ, ସେ ମୋର ପ୍ରକୃତରୂପ ଜାଣିବେ କିପରି ? ସେ ମୋର ମଧୁର ରୂପକୁ ଦେଖି ମୋହିତ ହୋଇ ଯାଇଛନ୍ତି । ମୋର ଐଶ୍ୱର୍ଯ୍ୟପୂର୍ଣ୍ଣ ସ୍ୱରୂପର ଦର୍ଶନ ନ ପାଇବା ପର୍ଯ୍ୟନ୍ତ, ଏ ଅବୋ ସନ୍ତୁଷ୍ଟ ହେବେ ନାହିଁ ।

ଅକ୍ରୂର ଗୋପପୁରରୁ ଆସିବା ମାର୍ଗରେ ଯମୁନାର 'ଅନନ୍ତତୀର୍ଥ' ଘାଟରେ ଆସି ଉପସ୍ଥିତ ହୋଇଗଲେ । ସେହି ଘାଟରେ ପ୍ରଭୁ ଶ୍ରୀକୃଷ୍ଣ ବ୍ରାହ୍ମଣପତ୍ନୀମାନଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ତାଙ୍କଠାରୁ ଅନ୍ନଗ୍ରହଣ କରିଥିଲେ । ଯମୁନା କୂଳରେ ପହଞ୍ଚିବାବେଳକୁ ରୌଦ୍ରତାପ ଖୁବ୍ ପ୍ରଖର ହୋଇ ଯାଇଥିଲା । ଅକ୍ରୂର ସେଇଠାରେ ଗୋଟିଏ ଝଙ୍କାଳିଆ ଗଛ ମୂଳରେ ରଥଟିକୁ ଛିଡ଼ା କରାଇ ଦେଇ କହିଲେ--ଆପଣ ଦୁହେଁ ରଥରୁ ଓହ୍ଲାଇ ଯମୁନାରୁ ମୁହଁ ହାତ ଧୋଇ ଜଳପାନ କରି ଆସନ୍ତୁ । ମୁଁ ଏହିଠାରେ ମଧ୍ୟାହ୍ନ ସ୍ନାନ ଶେଷ କରି ସନ୍ଧ୍ୟାବନ୍ଦନା କରୁଛି ।

ଅକ୍ରୂରଙ୍କ କଥା ଶୁଣି ରାମକୃଷ୍ଣ ରଥରୁ ଓହ୍ଲାଇ ଯମୁନାରେ ହାତଗୋଡ଼ ଧୋଇ ଜଳପାନ କରି ଆସି ରଥରେ ବସିଲେ । ତହୁଁ ଅକ୍ରୂର କହିଲେ--ଏଥର ମୁଁ ମୋର ମଧ୍ୟାହ୍ନ ସନ୍ଧ୍ୟା ଶେଷ କରି ଆସୁଛି । ହଁ, ଦେଖ, ଏଇଠି ରଥ ଉପରେ ବସିଥିବ, ଆଉ କୁଆଡ଼େ ଯିବେ ନାହିଁ ।

ଅକ୍ରୂରର କଥା ଶୁଣି ପ୍ରଭୁ ଶ୍ୟାମସୁନ୍ଦର ମୁଖମଣ୍ଡଳରେ ଦରହାସ ଖେଳାଇ ଦେଇ, ସମ୍ମତି ସୂଚକ ଶିର ହଲାଇ ଦେଲେ । ଅକ୍ରୂର ଜଳ ମଧ୍ୟରେ ପ୍ରବେଶ କରି ମନ୍ତ୍ରପାଠ ପୂର୍ବକ ଜଳରେ ବୁଡ଼ି ସ୍ନାନ କଲେ । ଏହି ସମୟରେ ହଠାତ୍ ଏକ ଅଲୌକିକ ଦୃଶ୍ୟ ତାଙ୍କ ଦୃଷ୍ଟିରେ ପଡ଼ିଲା । ସେ ଦେଖିଲେ--କୃଷ୍ଣ-ବଳରାମ ଦୁହେଁ ଜଳ ମଧ୍ୟରେ ଆନନ୍ଦରେ ବସିଛନ୍ତି । ସେ ଦୁହିଁଙ୍କୁ ଜଳ ମଧ୍ୟରେ ଦେଖି ଅକ୍ରୂର ମନେ ମନେ ଭାବିଲେ—ମୁଁ ଏହିକ୍ଷଣି ଦୁହିଁଙ୍କୁ ରଥ ଉପରେ ବସାଇ ଆସିଲି, ସେ ଦୁହେଁ କ'ଣ ମୋତେ ଭଣ୍ଡିଦେବା ପାଇଁ ରଥରୁ ଓହ୍ଲାଇ ପାଣି ଭିତରକୁ ପଶିଗଲେ କି ? ହଁ, ଦୁହେଁ ଯାକ ନିତାନ୍ତ ଦୁଷ୍ଟ, ମୋ' ସହିତ ଦୁଷ୍ଟାମି କରିବା ଆଳରେ ପାଣି ଭିତରକୁ ପଶି ଆସିଥିବେ ! କିନ୍ତୁ ଏତେ ଶୀଘ୍ର ସେ ଦୁହେଁ ଆସିଲେ କିପରି ? ତା'ହେଲେ, ଦେଖିଲେ ଜଣାପଡ଼ିବ । ଯଦି ଦୁହେ ରଥରୁ ଓହ୍ଲାଇ ଆସିଥିବେ । ତେବେ କେବେହେଲେ ରଥ ଉପରେ ନ ଥିବେ ।

ଅକ୍ରୂର ଜପତପ ଆଦି ଭୁଲିଯାଇ, ରଥକୁ ଚାହିଁ ଅବାକ୍ ହୋଇଗଲେ । ରଥ ଉପରେ ରାମ-ଗୋବିନ୍ଦ ବସି, ଅକ୍ରୂରଙ୍କ ଆଡ଼କୁ ଚାହିଁ ମୃଦୁମୃଦୁ ହସୁଥିଲେ । ଅକ୍ରୂର ଆହୁରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇ ଭାବିଲେ—ମୋର ମତିଭ୍ରମ ହେଲା କି ? ରଥ ଉପରେ ଦୁଇଭାଇଙ୍କୁ ଯେଉଁଭଳି ଭାବରେ ବସାଇ ଦେଇ ଆସିଥିଲି, ଠିକ୍ ସେହିପରି ଭାବରେ ବସିଛନ୍ତି ।

ଏହା ଚିନ୍ତାକରି ଅକ୍ରୂର ପୁଣି ଥରେ ଯମୁନା ଜଳରେ ବୁଡ଼ ପକାଇଲେ । ସେ ପୁଣି ନୀଳ-ଧବଳ ମୂର୍ତ୍ତିଙ୍କୁ ଜଳରେ ଅବଲୋକନ କଲେ । ସେ ଦେଖିଲେ—ସଙ୍କର୍ଷଣାବତାର ଅନନ୍ତଦେବ ବଳଦେବଙ୍କ ଚାରଣପଟ୍ଟେ ସିଦ୍ଧ, ଚାରଣ, ଗୁହ୍ୟକ, ଗନ୍ଧର୍ବ, ଯକ୍ଷ, ରାକ୍ଷସ ତଥା ଅନ୍ୟାନ୍ୟ ଦେବ-ଉପଦେବ ମସ୍ତକ ଅବନତ କରି ସ୍ତୁତି କରୁଛନ୍ତି । ତାଙ୍କର ସହସ୍ରଫଣାରୁ ମଣିଗଣର ପ୍ରଭା ବିଚ୍ଛୁରିତ ହେଉଛି । ସେ କମଳ ନାଳ ସଦୃଶ ଧବଳ ଶ୍ରୀଅଙ୍ଗରେ ଦିବ୍ୟ ନୀଳାମ୍ବର ଧାରଣ କରିଛନ୍ତି । ସେ ପ୍ରତ୍ୟକ୍ଷ ଅନୁଭବ କଲେ, ଯେତେ ଯେପରି ବିଶାଳ କୈଳାସ ଗିରି ଉପରେ ମଣିଗଣ ପ୍ରଭା ବିକିରଣ କରୁଛନ୍ତି ଏବଂ ବାଳସୂର୍ଯ୍ୟର ଆଭାରେ ସେହି ପରିବେଶଟି ମନୋଜ୍ଞ ଦେଖାଯାଉଛି । ସେହି ମହାପ୍ରଭୁ ସଙ୍କର୍ଷଣଙ୍କ କୋଳରେ ନୀଳମେଘ ସଦୃଶ ଶ୍ୟାମସୁନ୍ଦର ପୀତାମ୍ବରଧାରୀ ଶଙ୍ଖ, ଚକ୍ର, ଗଦା, ପଦ୍ମରେ ସୁଶୋଭିତ ହୋଇ ବସିଛନ୍ତି । ତାଙ୍କର ମନୋଜ୍ଞ ମୁଖକମଳରୁ ମୃଦୁମନ୍ଦ ହାସ୍ୟଛଟା ବିଚ୍ଛୁରିତ ହେଉଛି । ବକ୍ଷସ୍ଥଳରେ ଶ୍ରୀବତ୍ସଚିହ୍ନ ଓ କୌସ୍ତୁଭମଣି ଶୋଭା ପାଉଛି ଏବଂ ମହାଲକ୍ଷ୍ମୀ ମଧ୍ୟ ବିରାଜମାନ କରିଛନ୍ତି । ମସ୍ତକରେ ଦିବ୍ୟ ମଣିମୁକୁଟ ଶୋଭା ପାଉଛି । ଆହୁରି ମଧ୍ୟ ତାଙ୍କର ପ୍ରଶସ୍ତ ବକ୍ଷଦେଶରେ ମଣିମୁକ୍ତା ଓ ପୁଷ୍ପମାଳା ପରିଶୋଭିତ ହେଉଛି । କଟିଦେଶରେ ପୀତାମ୍ବର ଉପରେ ସୁବର୍ଣ୍ଣର ଅଣ୍ଟାସୂତା ଉଜ୍ଜ୍ୱଳ ପରି ବନ୍ଧା ହୋଇଛି । ଚତୁଃପାର୍ଶ୍ୱରେ ବ୍ରହ୍ମା, ଶିବ, ଇନ୍ଦ୍ରାଦି ଦେବଗଣ ତଥା ସନକାଦି ମୁନିମାନେ ସ୍ତୁତିପାଠ କରୁଛନ୍ତି । ପାର୍ଶ୍ୱଦେଶରେ ମହର୍ଷି ଆଦି ପ୍ରଜାପତିମାନେ କରଯୋଡ଼ି, ଆଦେଶକୁ ପ୍ରତୀକ୍ଷା କରି ଛିଡ଼ା ହୋଇଛନ୍ତି । ଏପରି ଏକ ଅଦ୍‌ଭୁତ ଶୋଭା-ରାଶିକୁ ଦେଖି ଅକ୍ରୂର ଅଧିକ ଆଶ୍ଚର୍ଯ୍ୟ ହୋଇଗଲେ । ଶ୍ରୀକୃଷ୍ଣ ଓ ବଳରାମଙ୍କର ଏପରି ଅଦ୍‌ଭୁତ ଶୋଭାରାଶି ନିରୀକ୍ଷଣ କରି, ସେ ଆନନ୍ଦ ସାଗରରେ ନିମଜ୍ଜିତ ହୋଇଗଲେ । ହରିପ୍ରେମରେ ନିମଜ୍ଜିତ ହୋଇଥିବା ଫଳରେ ତାଙ୍କର ସର୍ବାଙ୍ଗ ପୁଲକିତ ହୋଇଉଠିଲା । ସେ ପ୍ରଥମେ ଏହି ଶୋଭାମୟ ତଥା ଅଲୌକିକ ରୂପ ସନ୍ଦର୍ଶନ କରି, ଚେତନା ହରାଇଲା ପରି ଅଣନିଃଶ୍ୱାସୀ ହୋଇପଡ଼ିଲେ । ତା'ପରେ ସେ ଧୈର୍ଯ୍ୟଧାରଣ କରି ସେହି ଜନ-ମନରଞ୍ଜନ ନିରଞ୍ଜନଙ୍କ ପଦାରବିନ୍ଦରେ ସ୍ତୁତି କରିବାକୁ ଆରମ୍ଭ କରିଦେଲେ । ଅନେକ ସମୟ ପର୍ଯ୍ୟନ୍ତ ଅକ୍ରୂର ବାହ୍ୟଜ୍ଞାନ ହରାଇ ଗୂଢ଼-ଜ୍ଞାନଯୁକ୍ତ ବାଣୀରେ ଦିବ୍ୟସ୍ତୁତି କରି, ନୟନରୁ ଆନନ୍ଦାଶ୍ରୁ ଝରାଇଲେ ।

ସୂତମୁନି କହିଲେ—ହେ ମୁନିଗଣ, ଏହି ସମୟରେ ଭଗବାନଙ୍କର ଦିବ୍ୟରୂପ ଅନ୍ତର୍ହିତ ହୋଇଗଲା । ତହୁଁ ଅକ୍ରୂର ଜଳମଧ୍ୟରୁ ବାହାରି ଆସି ଦେଖିଲେ—ରାମ-କୃଷ୍ଣ ଦୁହେଁ ରଥ ଉପରେ ବସି ହସି ହସି ପରସ୍ପର ବାର୍ତ୍ତାଳାପ କରୁଛନ୍ତି । ଏହି ଦୃଶ୍ୟ

ଅବଲୋକନ କରିବାମାତ୍ରେ, ଅକ୍ରୂରଙ୍କ ମନରୁ ସମସ୍ତ ପ୍ରକାର ସନ୍ଦେହ ଦୂର ହୋଇଗଲା । ସେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଦିବ୍ୟବିଭୂତି ସମ୍ବନ୍ଧରେ ବେଶ୍ ହୃଦୟଙ୍ଗମ କରି ମନେ ମନେ ଭାବିଲେ—କଂସ କ'ଣ ଛାର, ଲକ୍ଷ ଲକ୍ଷ କଂସ ହେଲେ ମଧ୍ୟ ରାମ-କୃଷ୍ଣଙ୍କର ରୋମମୂଳ ମଧ୍ୟ ସ୍ପର୍ଶ କରିପାରିବେ ନାହିଁ ।

ପରମଭକ୍ତ ଅକ୍ରୂର ଭଗବାନ୍‌ଙ୍କ ଦିବ୍ୟଲୀଳା ଚର୍ମଚକ୍ଷୁରେ ଅବଲୋକନ କରି କୃତକୃତ୍ୟ ହୋଇଗଲେ । ସେ ତାଙ୍କର ମଧ୍ୟାହ୍ନ ସନ୍ଧ୍ୟା ଶେଷ କରି ରଥ ନିକଟକୁ ଲେଉଟି ଆସିଲେ । ସେତେବେଳେ ଅତ୍ୟଧିକ ଅନିର୍ବଚନୀୟ ଆନନ୍ଦରେ ଅକ୍ରୂରଙ୍କ ସର୍ବାଙ୍ଗ ପୁଲକିତ ହୋଇ ଉଠିଥିଲା ।

ସୂତମୁନି କହିଲେ—ହେ ମୁନିଗଣ, ଅକ୍ରୂରଙ୍କର ଭାବାବେଶ ଅବସ୍ଥା ନିରୀକ୍ଷଣ କରି, କିଛି ନ ଜାଣିଲା ପରି, ପଚାରିଲେ ଶ୍ୟାମସୁନ୍ଦର, ପିତୃବ୍ୟ, ଆପଣ ବିଚଳିତ ହେଲା ପରି ଦେଖାଯାଉଛନ୍ତି । ଆପଣଙ୍କ ଶରୀର ସୁସ୍ଥ ଅଛି ତ ? ଆପଣଙ୍କ ଆକୃତି ଦେଖି ମୋର ମନେ ହେଉଛି, ଆପଣ ଜଳ ମଧ୍ୟରେ କିଛି ନା କିଛି ଅଲୌକିକ ବସ୍ତୁ ପରିଦର୍ଶନ କରିଛନ୍ତି । କଅଣ ପ୍ରତ୍ୟକ୍ଷ କରିବା ଫଳରେ ଆପଣଙ୍କ ଚିତ୍ତବୃତ୍ତି ଏପରି ବିଚଳିତ ହେଲା ପରି ଦିଶୁଛି, ଦୟାକରି ଆମ ଆଗରେ ତାହା ବର୍ଣ୍ଣନ କରନ୍ତୁ ।

ଅକ୍ରୂର ହସି ହସି କହିଲେ—ହେ ପରମପୁରୁଷ, ସଂସାରରେ ପ୍ରତ୍ୟେକ ବସ୍ତୁ ଅଦ୍ଭୁତ । ପୃଥ୍ୱୀ, ଜଳ, ସ୍ଥଳ ଓ ଅନ୍ତରୀକ୍ଷରେ ଯେତେ କିଛି ଅଦ୍ଭୁତ ବସ୍ତୁ ରହିଛି, ସବୁକିଛି ଆପଣଙ୍କ ଅନ୍ତର ମଧ୍ୟରେ ସୂକ୍ଷ୍ମାତିସୂକ୍ଷ୍ମରୂପେ ଅନ୍ତର୍ହିତ ହୋଇଛି । ହେ ଅତ୍ୟଦ୍ଭୁତ ଐଶ୍ୱର୍ଯ୍ୟଶାଳୀ, ଯେଉଁ ବ୍ୟକ୍ତି ଆପଣଙ୍କ ଦର୍ଶନ ପାଇପାରିଛି, ତା'ପକ୍ଷରେ ସଂସାରରେ ଆଉ କ'ଣ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ଅବଶେଷ ରହିବ ? ଚାଲନ୍ତୁ ଆଉ ବିଳମ୍ବ କରିବା ନାହିଁ । ଶୀଘ୍ର ଯାଇ କଂସକୁ ଆପଣଙ୍କ ଆଗମନ ବିଷୟରେ ସୂଚନା ଦେବାକୁ ପଡ଼ିବ ।

ସୂତମୁନି କହିଲେ—ଶୌନକ ଆଦି ସିଦ୍ଧ ବ୍ରହ୍ମର୍ଷିଗଣ ! ଭଗବାନ୍ ଶ୍ରୀକୃଷ୍ଣଙ୍କ ଲୀଳା ଅପରସୀମ । ତାଙ୍କ ମହନୀୟତାକୁ ଜାଣିବାଏ ମାତ୍ର ଅବଲୋକନ କରି, ଅକ୍ରୂର କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ତା'ପରେ ସେ ରଥ ଉପରେ ବସିପଡ଼ି ବାୟୁବେଗରେ ରଥ ଚଳାଇ ଦେଲେ ।

## ଛପ୍‌ପଦୀ

ଶ୍ରୀଅନନ୍ତ ଫଣ ସହସ ମୁକୁଟ ମଣିମୟ ଶିର ସୋହେ ।<br>
ଗୋଦୀମହିଁ ଘନଶ୍ୟାମ ବିବଶେ ଜନ ମନ ମୋହେ ॥<br>
କର କପୋଲ କଟି କୁଟିଲ କେଶ ସବ ଅଁଗ ଅତି ମନହର ।<br>
କଙ୍କଣ କୁଣ୍ଡଳ କଟକ କରଧନୀ ଆଭୂଷଣଧର ॥<br>
ଲଖି ଅଦଭୁତ ଇସ୍ତୁତି କରୀ, ଦରଶନତେଁ ପ୍ରମୁଦିତ ପରମ ।<br>
ବୋଲେ-ହରି ଅପବର୍ଗପତି, କାମ ଅର୍ଥ ତୁମହୀ ଧରମ ॥

ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ